ପ୍ରକାଶକ

ଶ୍ରୀ ଭର୍ତ୍ତୃହରି ମହତାବ

ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ

କଟକ-୭୫୩୦୦୨

ମୁଦ୍ରଣ :

ପ୍ରଜାତନ୍ତ୍ର ପ୍ରେସ, କଟକ-୨

ନୂତନ ସଂସ୍କରଣ ଫେବ୍ରୁଆରୀ ୧୯୯୫

ମୂଲ୍ୟ : ଅଠର ଟଙ୍କା ମାତ୍ର

---

**DASABARSARA ORISSA**

**Dr. Harekrushna Mahtab**

Publisher

**Dr. Harekrushna Mahtab Foundation**

Cuttack–753002

Printed at :

Prajatantra Press : Cuttack–2

New Edition—Feb. 1995

**Price : Rs. 18-00**

# ଅର୍ପଣ

ଘରଦ୍ୱାର ସବୁ ଛାଡ଼ି ଜୀବନକୁ ଏକ ମହାସମସ୍ୟା ମଧ୍ୟରେ ଫୋପାଡ଼ିବାକୁ ୧୯୨୧ ସାଲରେ ବାହାରିଥିଲି । ସେତେବେଳେ ଯେଉଁମାନେ ଏକ ପଥର ପଥିକ ହୋଇ ଏକ ନୂଆ ଘରକରଣା ସୃଷ୍ଟି କରିଥିଲେ, ସେମାନଙ୍କ ମଧ୍ୟରୁ ସୁବୋଧ ଓ ବିଶ୍ୱନାଥ ଥିଲେ ଅଗ୍ରଣୀ । କେତେ କଳ୍ପନା, କେତେ ଆଦର୍ଶକୁ ଆମେ ନିଜ ଜୀବନ ଉପରେ ବେପରବାୟ ଭାବରେ ପକାଇଦେଇ କି ସୁନ୍ଦର ଭାବରେ ଦିନ କଟାଉଥିଲୁଁ । ନିଜର ଗୋଟାଏ ଘର ଅଛି ବୋଲି ଭାବିପାରୁ ନଥିଲୁଁ । ସୁବୋଧ, ବିଶ୍ୱନାଥ ଗଲାଦିନୁଁ ସେଦିନ ଯାଇଛି । ଜୀବନର ସେ ଆନନ୍ଦ ନାହିଁ । ଅଛି କେବଳ ସେମାନଙ୍କ ସ୍ମୃତି ଯାହା ବର୍ତ୍ତମାନ ସୁଦ୍ଧା ଏକୁଟିଆ ଜୀବନରେ ସାହସ ଦେଉଛି । ଧୀରେ ଧୀରେ ସବୁ ବନ୍ଧୁ ଛାଡ଼ିଗଲେଣି । ବାଲେଶ୍ୱରର ସେ ଦିନକାର 'ସ୍ୱରାଜ୍ୟ ମନ୍ଦିର'ର ବିଶାଳ-କଳ୍ପନା ବର୍ତ୍ତମାନ 'କର୍ମ-ମନ୍ଦିର'ର ଆକାର ନେଇଛି । ବଞ୍ଚିବା ପର୍ଯ୍ୟନ୍ତ ତୁମ ଦୁହିଁଙ୍କୁ ଝୁରୁଥିବି । ଯାହାକିଛି କରୁଥିବି ସେଥିରେ ତୁମଙ୍କୁ ମନେ କରି ସାହସ ପାଉଥିବି । ଏହି ବହିଖଣ୍ଡି ତେଣୁ ତୁମ ସ୍ମୃତିରେ ଅର୍ପଣ କଲି ।

ତୁମର

**ମହତାବ**

# ମୂଳକଥା

୧୯୩୦ ସାଲରେ ଜେଲ୍‌ରେ ଥିବାବେଳେ ଏହି ବହି ଇଂରାଜୀରେ ଲେଖା ଆରମ୍ଭ ହୋଇ ଶେଷ ହୋଇ ନଥିଲା। ତା'ପରେ ୧୯୩୧ ସାଲରେ ଏହା ଶେଷ ହେଲା । ଇଂରେଜୀ ବହିଟି ଛାପିବାର ବାସନା ବର୍ତ୍ତମାନ ସୁଦ୍ଧା ଅଛି । ମାତ୍ର ସେହି ବିଷୟଟି ଓଡ଼ିଆରେ ପ୍ରକାଶ କରିବା ପ୍ରଥମ କର୍ତ୍ତବ୍ୟ ଭାବି ଏ ପୁସ୍ତକ ଛାପିବାକୁ ଦେଲି । ଏହା ଠିକ୍ ଇଂରେଜୀର ଅନୁବାଦ ନୁହେଁ । ସେ ସମୟର ଲେଖାଠୁଁ ଏହା ଟିକେ ପୃଥକ । ଯାହା-ହେଉ ବହିଟା ବଡ଼ ହୋଇଯିବ ଓ ତେଣୁ ଦାମ୍ ବେଶୀ ହୋଇଯିବ ଏହି ଆଶଙ୍କାରେ ଅନେକ ଘଟଣାର ପୁଙ୍ଖାନୁପୁଙ୍ଖ ବିବରଣ ନ ଦେଇ କେବଳ ମୋଟାମୋଟି ଭାବରେ ଦେଇ ଦେଇଛି । ଯା'ହେଉ ଗଣିଲା ବେଳକୁ ମୋଟେ ଦଶଟା ବରଷ ହେଲେ ମଧ୍ୟ କେତେ ଘଟଣା ଘଟିଗଲାଣି—କେତେ ଝଡ଼ତୋଫାନ ଦେଶ ଉପରେ ବହିଗଲାଣି, ସେଥିରେ ଧାରଣା ପାଠକବର୍ଗ କରିବେ ବୋଲି ଆଶା କରେ । ସମୁଦାୟ ଘଟଣା ସହିତ ଲେଖକ ନିଜେ ବିଶେଷ ଭାବେ ସଂପୃକ୍ତ ଥିବାରୁ ଏ ପୁସ୍ତକକୁ ସ୍ୱାଧୀନ ଲେଖା ବୋଲି ବିଚାର ନ କରିବା ସ୍ୱାଭାବିକ । ମାତ୍ର ଯେତେଦୂର ସମ୍ଭବ ନିଜକୁ ନିଜେ ଅଲଗା କରି ଦୂରରୁ ଘଟଣା ସବୁର ପର୍ଯ୍ୟାଲୋଚନା କରିବାର ଚେଷ୍ଟା କରିଛି । ସେଥିରେ ସମର୍ଥ ନ ହୋଇଥିଲେ ପାଠକେ କ୍ଷମା ଦେବେ । କେତେକ ବିଶିଷ୍ଟ କର୍ମୀ ଯେଉଁମାନେ ଗତ ଦଶବର୍ଷର ଓଡ଼ିଶା ଗଠନ କରିବାରେ ସାହାଯ୍ୟ କରିଛନ୍ତି

ସେମାନଙ୍କ ପ୍ରତିକୃତି ଏ ପୁସ୍ତକରେ ଦେବାର ଇଚ୍ଛାଥିଲେ ମଧ୍ୟ ଅସୁବିଧା ଯୋଗୁଁ ଦିଆଯାଇ ପାରିନାହିଁ । ଏ ବହି ଛପାବେଳେ ମୋର ବନ୍ଧୁ ଶ୍ରୀ ଭୈରବ ଚନ୍ଦ୍ର ମହାପାତ୍ର ଖୁବ୍ ସାହାଯ୍ୟ କରିଥିବାରୁ ତାଙ୍କୁ ଧନ୍ୟବାଦ ଦେଉଛି । ସେ ନିଜର କାମପରି ଯତ୍ନ ନ କରିଥିଲେ ଏହା ଛପା ହୋଇପାରି ନଥାନ୍ତା ।

୪, ଅକ୍ଟୋବର
୧୯୩୫

ଶ୍ରୀ ହରେକୃଷ୍ଣ ମହତାବ
କର୍ମ ମନ୍ଦିର, ଅଗରପଡ଼ା, ଭଦ୍ରକ

# ମୁଖବନ୍ଧ

ନିକଟ ଅତୀତର କିଛି ମୂଲ୍ୟ ଅଛି କି ନାଁ ଜାଣେ ନାହିଁ । ତଥାପି ଗତ ତିରିଶବର୍ଷ ମଧ୍ୟରେ ଏପରି ପରିବର୍ତ୍ତନ ଘଟିଯାଇଛି ଓ ବର୍ତ୍ତମାନ ମଧ୍ୟ ଘଟୁଛି ଯେଉଁଥିରେ ନିକଟ ଅତୀତ ମଧ୍ୟ ଦୂର ଅତୀତ ବୋଲି ବୋଧ ହେଉଛି । ଆଜିର ଯେ ବର୍ତ୍ତମାନ ସେ ଏହି ଗତକାଲିର ଭିତ୍ତି ଉପରେ ପ୍ରତିଷ୍ଠିତ ଏ କଥା ମଧ୍ୟ ପରିବର୍ତ୍ତନର ପ୍ରଖର ସ୍ରୋତରେ ଅନେକେ ଭୁଲି ଯାଇଥାନ୍ତି । ତେଣୁ ପରିବର୍ତ୍ତନକୁ ବିଚାର ଦ୍ୱାରା ନିୟନ୍ତ୍ରିତ କରିହୁଏ ନାହିଁ । ଫଳରେ ବହୁ ପ୍ରମାଦ ମଧ୍ୟ ଘଟିଯାଏ । ହୁଏତ ଆଜିକାଲି ସେପରି କିଛି ହେଉଛି । ସେହି ଦୃଷ୍ଟିରୁ ଅନ୍ତତଃ ନିକଟ ଅତୀତଟିକୁ ଜାଣିବା ଉଚିତ । ତେଣୁ ଆଜି 'ଦଶବର୍ଷର ଓଡ଼ିଶା'ର ପୁନଃ ମୁଦ୍ରଣକୁ ଲେଖକ ହିସାବରେ ମୁଁ ସ୍ୱାଗତ କରୁଛି ।

୧୯୩୫ ସାଲରେ 'ଦଶବର୍ଷର ଓଡ଼ିଶା' ପ୍ରକାଶିତ ହୁଏ । ପ୍ରକାଶର ଅଳ୍ପ ଦିନ ମଧ୍ୟରେ ବହିଟି ତତ୍କାଳୀନ ସରକାର ବାଜ୍ୟାପ୍ତି କରିଦିଅନ୍ତି । ଏ ବହି ବାଜ୍ୟାପ୍ତି ହେବା ସେତେବେଳେ ବିଲାତର ପାର୍ଲ୍ୟାମେଣ୍ଟରେ ପ୍ରଶ୍ନୋତ୍ତର ଜଣେ ପାର୍ଲ୍ୟାମେଣ୍ଟ ସଦସ୍ୟଙ୍କ ଜରିଆରେ କରାଇଥିଲି । ତା'ପରେ ୧୯୩୭ରେ ସେ ବାଜ୍ୟାପ୍ତି ଆଦେଶ ଉଠାଇ ନିଆଗଲା । କିନ୍ତୁ ଆଉ ସେ ବହିର ପୁନଃ ପ୍ରକାଶ ହୋଇପାରି ନଥିଲା । ମୁଁ ମଧ୍ୟ ନିଜେ ସେ ବହି ଖଣ୍ଡେ ଖୋଜି ପାଉନଥିଲି । ଆନନ୍ଦର ବିଷୟ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଶ୍ରୀ ବନମାଳୀ ପଟ୍ଟନାୟକ ଖଣ୍ଡିଏ

ବହୁ ଖୋଜ ବାହାର କରି ତାହାର ପୁନଃ ପ୍ରକାଶ କରୁଛନ୍ତି । ସେଥିପାଇଁ ମୁଁ ତାଙ୍କୁ ଧନ୍ୟବାଦ ଦେଉଛି ।

ନୂତନ ଯୁଗର ତିରିଶବର୍ଷ ଆଜ ହେଲା । ପ୍ରଥମ ଦଶବର୍ଷ ପରେ କୋଡ଼ିଏ ବର୍ଷ ବିତିଗଲାଣି । ଏଣୁ ପର କୋଡ଼ିଏ ବର୍ଷର ବିବରଣୀ ଲେଖିବା ଦରକାର ପଡ଼ୁଛି । ସମୟ ଓ ସୁବିଧାନୁସାରେ ସେ ଦିଗରେ ଦୃଷ୍ଟି ଦେବି । ଆଜ ପ୍ରଥମ ଦଶବର୍ଷ କଥା ଲୋକେ ଜାଣନ୍ତୁ ।

ଅକ୍ଟୋବର, ୧୯୬୭ ହରେକୃଷ୍ଣ ମହତାବ

# ଦଶବର୍ଷର ଓଡ଼ିଶା

## ଏକ

ଯେ ଶାସନ ଅଧୀନରେ ପଞ୍ଜାବର ଜାଲିୟାନାୱାଲା-ବାଗରେ ହଜାର ହଜାର ଲୋକଙ୍କୁ ପଶୁପରି ହତ୍ୟା କରା ହୋଇଥିଲା ଓ ନିଜେ ବିଲାତର ପ୍ରଧାନମନ୍ତ୍ରୀ ଭାରତୀୟ ମୁସଲମାନଙ୍କଠାରେ ପ୍ରତିଶ୍ରୁତି ହୋଇଥିଲେ ମଧ୍ୟ ଖିଲାଫତ ପ୍ରଶ୍ନର ସମାଧାନ ହୋଇ ପାରିଲା ନାହିଁ, ସେହି ଶାସନ ବିରୋଧରେ ଆଧ୍ୟାତ୍ମିକ ଲକ୍ଷ୍ୟ ରଖି ଶାନ୍ତିମତ ଯୁଦ୍ଧ ଘୋଷଣା କରି ସନ ୧୯୨୦ ମସିହାରେ କଲିକତାରେ ଭାରତୀୟ ଜାତୀୟ ମହାସଭାରେ ଯେତେବେଳେ ଅସହଯୋଗ ପ୍ରସ୍ତାବ ଗୃହୀତ ହୋଇଥିଲା, ସେତେବେଳେ ଅନେକ ପ୍ରବୀଣ ସାଧାରଣ ସେବୀ ମଧ୍ୟ ବିଶ୍ୱାସ କରିପାରି ନଥିଲେ ଯେ, ଭାରତୀୟ ଜାତିର ରାଜନୈତିକ ଆଦର୍ଶରେ ଏକ ଭୂମୂଳ ଝଡ଼ତୋଫାନ ବହି ଆସୁଛି ଓ ଗୋଟିଏ ନୂତନ ଚିନ୍ତାର ଧାରା ବଳାତ୍କାରରେ ପୁରାତନ ମଧ୍ୟରୁ ପ୍ରସବିତ ହେଉଅଛି । ଭାରତୀୟ ଜାତୀୟ ମହାସଭା ତେତେବେଳେ ଗୋଟିଏ ସୁ-ସଂଗଠିତ ସଂସ୍ଥା ନଥିଲା, ଏହା ଏକ ଲୋକଦେଖା ଅନୁଷ୍ଠାନ ଥିଲା, କାର୍ଯ୍ୟକାରୀ ନଥିଲା, ଏ ବିଶାଳ ଦେଶର ସମସ୍ତ ଅଞ୍ଚଳରେ ଏହାର ଶାଖା ପ୍ରଶାଖା ନଥିଲା । ଦେଶର ବିଶାଳ ଜନତାର

ପ୍ରକୃତ ସମସ୍ୟାର ସମାଧାନ ପ୍ରତି ଏ ଅନୁଷ୍ଠାନ ଲକ୍ଷ୍ୟ ଦେଇ ନଥିଲା । ତେଣୁ ଏ ଦୁର୍ଭାଗ୍ୟ ଦେଶ ଓ ଜାତିର ମୁକ୍ତି ପାଇଁ ବଦ୍ଧପରିକର । ଏକମାତ୍ର ଅନୁଷ୍ଠାନ ବୋଲି ମହାସଭାକୁ ଲୋକେ ମନେ କରୁ ନଥିଲେ । ଏଇଥିପାଇଁ ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ପରି ଜଣେ ବିଚକ୍ଷଣ ଲୋକ କଲିକତାରେ କହିଥିଲେ ଯେ, ଯଦି ଅସହଯୋଗର ବାର୍ତ୍ତା ସୁଦୂର ଗ୍ରାମ ପର୍ଯ୍ୟନ୍ତ ଯାଇ ପହଞ୍ଚି ପାରିବ ତେବେ ସେ ସେ ଆନ୍ଦୋଳନର ଜଣେ ସମର୍ଥକ ହେବେ । ଅସହଯୋଗ ବାର୍ତ୍ତା ଯେ କେବେ ସୁଦୂର ପଲ୍ଲୀରେ ପ୍ରବେଶ କରି ପାରିବ ଏ ବିଷୟରେ ପଣ୍ଡିତଙ୍କ ସନ୍ଦେହ ଥିବା ହେତୁ ସେ ଆନ୍ଦୋଳନରୁ ଅଲଗା ରହିଲେ । ବାସ୍ତବିକ କଲିକତାର ମହାସଭାରେ ବିଶେଷ ଅଧିବେଶନରେ କେତୋଟି ମାସ ପରେ ସନ୍ ୧୯୨୧ ମସିହାରେ ଜନସାଧାରଣଙ୍କର ଯେ ଜାଗୃତି ଦେଖାଗଲା ତାହା ସେତେବେଳେ କଳ୍ପନାର ଅଗୋଚର ଥିଲା ।

ଓଡ଼ିଶା ସେତେବେଳେ ଭାରତୀୟ ମହାସଭାରେ ଯୋଗ-ଦେଇ ନଥିଲା । ସେଠି ଯେ ଅସହଯୋଗ ବାର୍ତ୍ତା କେବେହେଲେ ପହଞ୍ଚି ପାରିବ ନାହିଁ, ଏକଥା ଧ୍ରୁବ ସତ୍ୟ ବୋଲି ଜଣାଯାଉଥିଲା । ପ୍ରାୟ ପଚିଶ ତିରିଶ ବର୍ଷ ଧରି କାହିଁକି ଯେ ଓଡ଼ିଶା ଜାତୀୟ ମହାସଭାରୁ ଅଲଗା ରହିଥିଲା, ଏହାର ସନ୍ତୋଷଜନକ କାରଣ, ଯେଉଁମାନେ ଏହା କରାଇଥିଲେ ସେମାନେ ଦେଇ ନାହାନ୍ତି । ମହାସଭା ଯେତେବେଳେ ଶିଶୁ ଅବସ୍ଥାରେ ଥିଲା ସେତେବେଳେ ସ୍ୱର୍ଗତ ମଧୁ ବାବୁ ଓ ସ୍ୱର୍ଗତ ଗୌରୀଶଙ୍କର ରାୟ ସେଥିରେ ଯୋଗ ଦେଇଥିଲେ । ମହାସଭାର ପୁରୁଣା କାଗଜପତ୍ରରୁ

ଜଣାଯାଏ ଯେ ମଧୁବାବୁ ଓଡ଼ିଶାର ବନ୍ଦୋବସ୍ତକୁ ସ୍ଥାୟୀ କରାଇବା ପାଇଁ ଓ ସ୍ୱଦେଶୀ ପ୍ରଚାର ପାଇଁ ଓଜସ୍ୱିନୀ ବକ୍ତୃତାମାନ ଦେଇଥିଲେ । ପରେ ଏମାନେ ମହାସଭାରେ ଓଡ଼ିଶା ଦେଶମିଶ୍ରଣ ବିଷୟରେ ଉତ୍‌ଥାପନ କରିବାର ଚେଷ୍ଟା କରିଥିଲେ ମାତ୍ର, ସେତେବେଳକାର ମହାସଭା ନେତାମାନେ ଏପରି ପ୍ରାଦେଶିକ ପ୍ରଶ୍ନ ଆଲୋଚନାର ସୁବିଧା ଦେଲେ ନାହିଁ ବୋଲି ଶୁଣାଯାଏ । ଓଡ଼ିଶାର ଦେଶମିଶ୍ରଣରେ ପ୍ରଶ୍ନ ମୂଳରୁ ଗୁରୁତର ମାତ୍ର ଓଡ଼ିଶା ବଙ୍ଗଦେଶ ସହିତ ଥିବାରୁ ବିଶେଷତଃ ବଙ୍ଗର ସ୍ୱାର୍ଥ ସହିତ ଓଡ଼ିଶାର ସ୍ୱାର୍ଥ ସମାନ ନଥିବାରୁ ଓ ବଙ୍ଗାଳିମାନେ ସେତେ-ବେଳକାର ମହାସଭାର ନେତା ଥିବାରୁ ଓଡ଼ିଶାର ନେତାମାନେ ମହାସଭା ଛାଡ଼ି ଆସିଲେ ବୋଲି କେହି କେହି କହନ୍ତି, ମାତ୍ର ସେ ସମ୍ବନ୍ଧରେ ଠିକ୍ କଥା ଜଣାଯାଏ ନାହିଁ । ଯେ କୌଣସି କାରଣରୁ ହେଉ ଓଡ଼ିଶା ପୂର୍ବାପୂର ମହାସଭାରୁ ଅଲଗା ଥିଲା, ଏପରି କି ମହାସଭାର ଖବର ପର୍ଯ୍ୟନ୍ତ ରଖିବାକୁ ଶିକ୍ଷିତ ଲୋକଙ୍କର ମନ ବଳୁ ନଥିଲା । ମହାସଭାରେ ଯୋଗ ଦେବାର ଅର୍ଥ ଓଡ଼ିଶାର ସ୍ୱାର୍ଥରେ ହାନି ଘଟାଇବା, ଏହା ହିଁ ସନ ୧୯୨୧ ମସିହା ପୂର୍ବରୁ ଶିକ୍ଷିତ ଲୋକଙ୍କର ଧାରଣା ଥିଲା । ହୋଇପାରେ, ସେତେବେଳେ ମହାସଭାର ନେତାମାନଙ୍କର ଦୋଷ ଥିଲା । ମାତ୍ର ଏହା ନିଃସନ୍ଦେହ ଯେ ଓଡ଼ିଶାର ଇତିହାସ ଯେପରି ଗୌରବମୟ, ସେଥିରେ ଓଡ଼ିଶା ଭାରତୀୟ ରାଜନୀତିରୁ ଅଲଗା ରହିବା ଓଡ଼ିଶା ପକ୍ଷରେ ହାନିକାରକ ହୋଇଛି । ସ୍ୱାଧୀନତାର ପ୍ରୟାସ ଜାତି ପକ୍ଷରେ ସ୍ୱଭାବସିଦ୍ଧ । ସେ ସ୍ୱାଭାବିକ ଗତିରେ ବାଧାଦେବା ଦ୍ୱାରା ଜାତିର ଆଦର୍ଶ କ୍ଷୁଣ୍ଣ ହେବ ଏଥିରେ ସନ୍ଦେହ ନାହିଁ । ଶିକ୍ଷା ଓ

ସଂସ୍କାରରେ ଓଡ଼ିଶା ଭାରତର ଅନ୍ୟ ପ୍ରଦେଶର ପଛରେ ନୁହେଁ । ଓଡ଼ିଶା ରାଜାଙ୍କର ନଜର ଗୋଟିଏ ଅଦ୍ଭ ଅଛି ବୋଲି ଓଡ଼ିଆ ଗର୍ବ ପ୍ରକାଶ କରେ । ଏହି ସେଦିନ ଓଡ଼ିଆର କୃଷକସେନାମାନେ ମୋଗଲ ଓ ପଠାଣଙ୍କୁ ବଙ୍ଗ ଓ ମାନ୍ଦ୍ରାଜର ସୀମାରେ ପ୍ରତିହତ କରିଥିଲେ । ଓଡ଼ିଶାର ଯେ ସାମ୍ରାଜ୍ୟ ଥିଲି ତାହା, ଆର: ଡ. ବେନାର୍ଜିଙ୍କ ଓଡ଼ିଶା ଇତିହାସରେ ବର୍ଣ୍ଣିତ ହୋଇଅଛି । ଏତେବଡ଼ ଜାତି ଯେ ଜାତୀୟ ମହାସଭାରୁ ଦୂରେଇ ରହିଥିଲା ଏହାହିଁ ଆଶ୍ଚର୍ଯ୍ୟର ବିଷୟ ହେଲେ ମଧ୍ୟ ୧୯୨୧ ସାଲ ପୂର୍ବରୁ ନିରାଟ ସତ୍ୟ ଥିଲା । କଲିକତାରେ ଯେତେବେଳେ ଅସହଯୋଗ ପ୍ରସ୍ତାବ ଗୃହୀତ ହେଲା, ସେତେବେଳେ ଓଡ଼ିଶା ଜାତୀୟ ମହାସଭା ବିଷୟରେ ସମ୍ପୂର୍ଣ୍ଣ ଉଦାସୀନ ଥିଲା । ସ୍ୱାଧୀନତାର ପ୍ରୟାସ ବା ପରାଧୀନତା ବିରୋଧରେ କିଛି ମାତ୍ର ଚେଷ୍ଟା ନଥିଲା । ସେଥିପାଇଁ ଓଡ଼ିଶାରେ ଅହିଂସା ଅସହଯୋଗର ପ୍ରଗତି ଲକ୍ଷ୍ୟ କରିବାର ଅର୍ଥ ଅଛି । ପତିତ ଜାତିର ଉଦ୍ଧାର ପାଇଁ ଅହିଂସାର ଶକ୍ତି କେତେଦୂର କଅଣ କରିପାରେ ତାହା ଏହି ଓଡ଼ିଶାର ଦଶବର୍ଷର ଇତିହାସରୁ ସୁସ୍ପଷ୍ଟ ହେବ ।

## ଦୁଇ

ଓଡ଼ିଶାରେ ସଭାସମିତିର କାର୍ଯ୍ୟ ଆଲୋଚନା କରିବା ପୂର୍ବରୁ ସନ ୧୯୨୧ ସାଲ ଆଗେ ଓଡ଼ିଶାର ସାଧାରଣ ଜୀବନ କିପରି ଥିଲା ଜାଣିବା ଦରକାର । ୧୯୨୧ ମସିହା ପର୍ଯ୍ୟନ୍ତ ଓଡ଼ିଶାର ଏକମାତ୍ର ରାଜନୀତି ଥିଲା ଓଡ଼ିଶାର ଦେଶମିଶ୍ରଣ ପାଇଁ ସରକାରଙ୍କଠାରେ ଆପତ୍ତି ଓ ତାହାଁର ଆନୁସଙ୍ଗିକ ବିଷୟ 'ଅପହାରକ' ବଙ୍ଗାଳିଙ୍କ ହାତରୁ ଓଡ଼ିଶାର ସ୍ୱାର୍ଥକୁ ରକ୍ଷାକରିବା । ବଙ୍ଗାଳିମାନେ ଓଡ଼ିଶାର ପ୍ରଧାନ ଶତ୍ରୁ ବୋଲି ବିବେଚିତ ହେଉଥିଲେ । ଯେ ବଙ୍ଗାଳିମାନଙ୍କୁ ଖୁବ୍ ଗାଳି ଦେଇପାରୁଥିଲା, ସେ ଜଣେ ଦେଶପ୍ରେମୀ ବୋଲି ବିବେଚିତ ହେଉଥିଲା—ଓଡ଼ିଶାରେ ଏହି ବଙ୍ଗାଳି ବିରୁଦ୍ଧ ଭାବର ଗୋଟିଏ ଇତିହାସ ଅଛି । ଇଂରେଜମାନେ ବଙ୍ଗଦେଶ ଦଖଲ କରିବାର ବହୁଦିନ ପରେ ୧୮୦୩ ମସିହାରେ ଓଡ଼ିଶା ଦଖଲ କଲେ । ସେତେବେଳେ ଶାସନ କାର୍ଯ୍ୟରେ ବଙ୍ଗାଳିମାନେ ଇଂରେଜଙ୍କର ପ୍ରଧାନ ସହାୟକ ଥିଲେ । ତେଣୁ ଇଂରେଜ ଓ ଓଡ଼ିଆଙ୍କ ମଧ୍ୟରେ ବଙ୍ଗାଳିମାନେ ମଧ୍ୟବର୍ତ୍ତୀ ହୋଇ ରହିଥିଲେ । ଇଂରେଜ ଶାସକମାନଙ୍କ ତରଫରୁ ଅନିଷ୍ଟକର କାର୍ଯ୍ୟଗୁଡ଼ିକ ବଙ୍ଗାଳିମାନଙ୍କ ହାତରେ କରାହେଉଥିଲା । ଓଡ଼ିଆଙ୍କ ଘୃଣା ତେଣୁ ବଙ୍ଗାଳିଙ୍କ ମୁଣ୍ଡରେ ଗଲା । ଏହାଛଡ଼ା କମ୍ପାନୀ ଅମଳରେ ବଙ୍ଗାଳିମାନେ ବଡ଼ ବଡ଼ ଅଧିକାର ପାଇଥିଲେ ଓ ସେମାନଙ୍କ ସ୍ୱଭାବ ସୁଲଭ ଚତୁରତା ଦ୍ୱାରା ଅନେକ ଓଡ଼ିଆଙ୍କୁ ସେମାନଙ୍କ ବହୁଦିନର ସ୍ୱତ୍ୱ ସମ୍ପତ୍ତିରୁ ବଞ୍ଚିତ କରାଇଥିଲେ । ବସ୍ତୁତଃ ସେହି

କାରଣରୁ ବର୍ତ୍ତମାନ ଓଡ଼ିଶାରୁ ଅଧିକାଂଶ ଜମିଦାର ବଙ୍ଗାଳି । ଜଣେ ବଙ୍ଗାଳି କର୍ମଚାରୀ କଳକୌଶଳରେ ଖୋର୍ଦ୍ଧାର ବକ୍ସିଙ୍କୁ ତାଙ୍କର ପ୍ରଭୁତ୍ୱ ସମ୍ପତ୍ତିରୁ ବଞ୍ଚିତ କରିବାରୁ ୧୮୦୫ ସାଲରେ ଖୋର୍ଦ୍ଧା ବିଦ୍ରୋହ ଘଟିଥିଲା । ବଙ୍ଗାଳିମାନେ କେବଳ ଏତିକରେ ନିବୃତ୍ତ ହୋଇ ନଥିଲେ । କମ୍ପାନୀ ଅମଳରେ ସମସ୍ତ ଚାକିରୀରେ ବଙ୍ଗାଳିମାନେ ରହି ଓଡ଼ିଶାରେ ଭାଷା ପୃଥକ ଥିବା ହେତୁ ସୁରୁଖୁରୁରେ କାମ କରିବାରେ ଅସୁବିଧା ହେଲା । ଓଡ଼ିଶାକୁ ବଙ୍ଗଦେଶର ପ୍ରସାର ଭୂମି ମନେକରି ଓଡ଼ିଶାରେ ବଙ୍ଗଳା ଚଳାଇବା ପାଇଁ କେତେକ ବଙ୍ଗାଳି ପ୍ରମାଣ କରିବାକୁ ଚେଷ୍ଟା କଲେ ଯେ, ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ । ଏହା ବଙ୍ଗଳାର ଅପଭ୍ରଂଶ ମାତ୍ର ! ଯଥାର୍ଥତଃ ଓଡ଼ିଆ ଭାଷା ବଙ୍ଗଭାଷାଠାରୁ ପ୍ରାଚୀନ ଓ ସେ ସମୟର ଓଡ଼ିଆ ଭାଷା ବଙ୍ଗଳାଠାରୁ ଉନ୍ନତ ଥିଲା । ଆଜିକାଲି ଅବଶ୍ୟ ଅଧ୍ୟବସାୟ ଫଳରେ ବଙ୍ଗଳା ଭାଷା ଓଡ଼ିଆ ଭାଷାଠାରୁ ଖୁବ୍ ବେଶୀ ଉନ୍ନତ ହୋଇଗଲାଣି । ଯାହାହେଉ କେତେକ ପରୋପକାରୀ ଖ୍ରୀଷ୍ଟିୟାନ ପାଦ୍ରୀଙ୍କ ସାହାଯ୍ୟରେ ଓଡ଼ିଆମାନେ ବଙ୍ଗାଳିଙ୍କ ଏ ଭାଷା ଦଖଲର ଉଦ୍ୟମକୁ ପ୍ରତିରୋଧ କରି ଜୟୀ ହୋଇଥିଲେ । କିନ୍ତୁ ବଙ୍ଗାଳିମାନେ ସରକାରୀ ଚାକିରୀ ଓ ଓକିଲାତିରେ ମାଡ଼ି ଚାଲିଲେ । ଏଥିରେ ଓଡ଼ିଆମାନେ ଉତ୍ୟକ୍ତ ହେଲେ । ବଙ୍ଗାଳିଙ୍କ କବଳରୁ ଓଡ଼ିଶାର ସ୍ୱାର୍ଥକୁ ରକ୍ଷା କରିବାପାଇଁ ଓ ଓଡ଼ିଆ ଜାତିକୁ ସୁସଂଗଠିତ କରିବା ସକାଶେ ବିଭିନ୍ନ ପ୍ରଦେଶାଧୀନ ଓଡ଼ିଆ ଭାଷୀ ଅଞ୍ଚଳକୁ ଏକୀକରଣ ଉଦ୍ଦେଶ୍ୟରେ ୧୮୯୫ ମସିହାରେ ଉତ୍କଳ ସମ୍ମିଳନୀ ଗଠିତ ହୋଇଥିଲା । ସନ ୧୯୨୬ ସାଲ ପର୍ଯ୍ୟନ୍ତ ପ୍ରାକୃତିକ ଓଡ଼ିଶାର ଭିନ୍ନ ଭିନ୍ନ ସ୍ଥାନରେ

ଏହିବ ସମ୍ମିଳନୀର ବାର୍ଷିକ ଅଧିବେଶନ ବସୁଥିଲା । ଏଥିରେ ଗଡ଼ଜାତର ରାଜା ଓ ଜମିଦାରଙ୍କଠାରୁ ଆରମ୍ଭ କରି ସାମାନ୍ୟ କୃଷୀ ପର୍ଯ୍ୟନ୍ତ ଯୋଗ ଦେଉଥିଲେ । ସ୍ୱରାଷ୍ଟ୍ର ଜାତୀୟ ଆନ୍ଦୋଳନର ଇତିହାସରେ ଏ ପ୍ରକାର ସମ୍ମିଳନୀ ବାସ୍ତବିକ ଏକ ଅଭିନବ ବ୍ୟାପାର ଥିଲା । ଭିନ୍ନ ଭିନ୍ନ ପ୍ରଦେଶାଧୀନରେ ରହିବ ଓଡ଼ିଆମାନେ ସ୍ଥାନେ ସ୍ଥାନେ ନିଜର ମାତୃଭାଷା ପର୍ଯ୍ୟନ୍ତ ଶିଖିବାରେ ବାଧା ପାଉଥିଲେ । ସମସ୍ତ ଓଡ଼ିଆ ଭାଷୀଙ୍କ ମଧ୍ୟରେ ସଂସ୍କାରଗତ ଭ୍ରାତୃଭାବ ବଜାୟ ରଖିବାରେ ଉତ୍କଳ ସମ୍ମିଳନୀ ଯଥେଷ୍ଟ କାର୍ଯ୍ୟ କରିଥିଲା । ଏ ସମ୍ମିଳନୀରେ ରାଜନୈତିକ ଆଲୋଚନା ହେଉ ନଥିଲା । ଶେଷଆଡ଼କୁ ସାମାନ୍ୟ ରାଜନୈତିକ ଚର୍ଚ୍ଚା ଏଥିରେ ହୋଇଥିଲା । ତଥାପି ଅନେକ ଗଠନମୂଳକ କାର୍ଯ୍ୟକ୍ରମର ଆଲୋଚନା ଏ ସମ୍ମିଳନୀରେ ହେଉଥିଲା । ଯଦି ଜଣେ ଉତ୍କଳ ସମ୍ମିଳନୀର ପୁରୁଣା କାଗଜପତ୍ର ଓଲଟାଏ ତେବେ ସେ ଦେଖି ବିସ୍ମିତ ହେବ ଯେ ଅନେକ ଗୁରୁ ବ୍ୟାପାରରେ ଅନ୍ୟାନ୍ୟ ଅନେକ ପ୍ରଦେଶଠାରୁ ଓଡ଼ିଶା ଅନ୍ତତଃ ଚିନ୍ତାରେ ଆଗେଇ ଆଗେଇ ଯାଉଥିଲା । ଅରଟରେ ସୂତା କାଟିବା କଥା ସନ ୧୯୨୧ ସାଲରେ ବିଖ୍ୟାତ ହେଲା । ମାତ୍ର ସନ ୧୯୧୧ ସାଲ ଉତ୍କଳ ସମ୍ମିଳନୀର ୮ମଶ ଅଧିବେଶନରେ ଅରଟରେ ସୂତା କାଟିବା ବିଷୟ ଆଲୋଚିତ ହୋଇଥିଲା ଓ ଓଡ଼ିଶାରେ ଅରଟ ପ୍ରଚାର ପାଇଁ ଗୋଟିଏ କମିଟି ଗଠିତ ହୋଇଥିଲା । ଜଣେ ପ୍ରତିନିଧି ଅରଟରେ ସୂତାକାଟି, ସମ୍ମିଳନୀ ଆଗରେ ଦେଖାଇ ଥିଲେ । ପ୍ରଧାନ ପ୍ରଧାନ ନେତାମାନେ ଏପରିକି ମଧୁବାବୁ ନିଜେ ହାତକଟା ଓ ହାତବୁଣା ଲୁଗାପିନ୍ଧି ସମ୍ମିଳନୀକୁ ଆସୁଥିଲେ । ବଙ୍ଗର

ଅଙ୍ଗଚ୍ଛେଦ ଆନ୍ଦୋଳନବେଳେ ବଙ୍ଗଲକ୍ଷ୍ମୀ ଲୁଗାକଳ ଯେତେବେଳେ ବସିଲା, ସେତେବେଳେ ଆଠଗଡ଼ ଗଡ଼ଜାତର ରାଜା ଓଡ଼ିଶାରେ ଗୋଟିଏ ଲୁଗାକଳ ବସାଇବା ପାଇଁ ଉତ୍କଳ ସମ୍ମିଳନୀ ହାତରେ ୫୨୦,୦୦୦ଙ୍କା ଦେବାକୁ ପ୍ରତିଶ୍ରୁତ ହୋଇଥିଲେ । କିନ୍ତୁ ଅର୍ଥ ପ୍ରଶ୍ନର ଦ୍ୱାରା ସମସ୍ୟାର ସମାଧାନ ଯେପରି ହେବ, କଳ ଦ୍ୱାରା ସେପରି ହୋଇପାରିବ ନାହିଁ ବୋଲି ମନେକରି ଉତ୍କଳ ସମ୍ମିଳନୀ ସେ ଦାନକୁ ଧନ୍ୟବାଦର ସହିତ ପ୍ରତ୍ୟାଖ୍ୟାନ କରିଥିଲା । ଏସବୁ ଅବଶ୍ୟ କେବଳ ପ୍ରସ୍ତାବ ମାତ୍ର ଥିଲା । ମାତ୍ର କାର୍ଯ୍ୟରେ କିଛି ହେଉଥିଲାପରି ଜଣାପଡ଼େ ନାହିଁ । ଓଡ଼ିଶା ନେତାମାନଙ୍କ ବୁଦ୍ଧିର ତେଜ ଯେପରି ଥିଲା; ଯଦି ତା'ର ଅଧେ କର୍ମନିଷ୍ଠା ଥାଆନ୍ତା, ତାହେଲେ ଓଡ଼ିଶା ଆଜି ଭାରତରେ ଅଗ୍ରଣୀ ହୋଇ ଥାଆନ୍ତା । ମାତ୍ର ତାହା ଓଡ଼ିଶା ଭାଗ୍ୟରେ ନାହିଁ ।

କେବଳ ଏହି ଅର୍ଥ ପ୍ରଶ୍ନର ବିଷୟ ନୁହେଁ, ଦେଶମିଶ୍ରଣ ସଂକ୍ରାନ୍ତ ପ୍ରସ୍ତାବମାନ ମଧ୍ୟ ଯାହା ସେଇ ପ୍ରସ୍ତାବ ଆକାରରେ ସମ୍ମିଳନୀର କାଗଜପତ୍ରରେ ରହେ । ଏଇଥିପାଇଁ କେବଳ ବାର୍ଷିକ ଅଧିବେଶନ ଫଳରେ ଓଡ଼ିଆଙ୍କ ମଧ୍ୟରେ ଭ୍ରାତୃଭାବ ବଜାୟ ରଖିବା ଛଡ଼ା ସମ୍ମିଳନୀ ଆଉ ବେଶୀ କିଛି କରିପାରି ନଥିଲା । ଭାରତ ମହାସଭାରେ ଗାନ୍ଧୀଙ୍କ ଆବିର୍ଭାବ ଆଗରୁ ମହାସଭାର ପ୍ରସ୍ତାବ ସବୁ ବୋଧହୁଏ ସେହିପରି କାଗଜ କଲମରେ ରହୁଥିଲା । ୧୯୧୮ ସାଲରେ ଉତ୍କଳ ସମ୍ମିଳନୀ ପଞ୍ଜାବ ଅତ୍ୟାଚାରକୁ ନରମ ଭାବରେ ନିନ୍ଦା କରିଥିଲା, ଏହାହିଁ ବୋଧହୁଏ ସମ୍ମେଳନୀର ଏକମାତ୍ର ଭାରତୀୟ ପ୍ରଶ୍ନର ବିଚାର ।

ମାନନୀୟ ମଧୁସୂଦନ ଦାସ ସି.ଆଇ.ଇ.ଙ୍କ ଜୀବନୀ ସହିତ ଉତ୍କଳ ସମ୍ମିଳନୀକୁ ଆଲୋଚନା ନ କଲେ; ସମ୍ମିଳନୀର ସମସ୍ତ ବିଷୟ ଜଣେ ଜାଣି ପାରିବ ନାହିଁ । ମଧୁବାବୁ ସମ୍ମିଳନୀର ଜନ୍ମ-ଦାତା ଓ ସେ ଯେପରି ଇଚ୍ଛା କରିଥିଲେ ସମ୍ମିଳନୀକୁ ସେହିପରି ଭାବରେ ଗଢ଼ିଥିଲେ । ଉତ୍କଳ ସମ୍ମିଳନୀକୁ ମଧୁବାବୁଙ୍କ ସମ୍ମିଳନୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ସନ ୧୯୨୧ ସାଲ ପର୍ଯ୍ୟନ୍ତ ସେ ଓଡ଼ିଶାର ଅଦ୍ୱିତୀୟ ନେତା ଥିଲେ, ସବୁଶ୍ରେଣୀର ଲୋକଙ୍କ ଉପରେ ତାଙ୍କର ପ୍ରତିପତ୍ତି ଥିଲା । ନେତା ହିସାବରେ ତାଙ୍କଠାରୁ ୨୦୦ ହାତ ଦୂରରେ ଛିଡ଼ାହେବା ଭଳି ଲୋକ ସେତେବେଳେ ନ ଥିଲେ । ତାଙ୍କର ବାଗ୍ମିତା ଓ ବିଚକ୍ଷଣବୁଦ୍ଧି ଯୋଗୁଁ ସେ ଛାତ୍ର ସମାଜରେ ବଡ଼ ପ୍ରିୟଥିଲେ, ତାଙ୍କର ଅନେକ ସୁନ୍ଦର କଳ୍ପନା ଥିଲା, ସେ କଳ୍ପନା ସବୁ କାମରେ ପରିଣତ କରିବାପାଇଁ ସବୁ କ୍ଷତି ସ୍ୱୀକାର କରି ଚେଷ୍ଟା କରିଥିଲେ । ସ୍ୱଦେଶୀ ଆଡ଼କୁ ତାଙ୍କର ବଡ଼ ଝୁଙ୍କ ଥିଲା । ତନ୍ତରେ ଲୁଗା ବୁଣିବା ପାଇଁ ସେ ଗୋଟିଏ କାରଖାନା କରିଥିଲେ । ସେ ସମୟରେ ଏହା ଏତେ ଜନପ୍ରିୟ ହୋଇ ପଡ଼ିଥିଲା ଯେ, ଯେକୌଣସି ତନ୍ତବୁଣା ଲୁଗାକୁ ଲୋକେ ମଧୁବାବୁ ଲୁଗା ବୋଲି କହୁଥିଲେ । କଟକର ସୁବିଖ୍ୟାତ ସୁନାରୂପା ତାରକସି କାମର ସେ ଗୋଟିଏ କାରଖାନା କରିଥିଲେ । ଏସବୁ ଅନୁଷ୍ଠାନ ପଛରେ ଯଥେଷ୍ଟ ଉତ୍ସାହ ଥିଲେ ମଧ୍ୟ ବ୍ୟବସାୟ ବୃଦ୍ଧି ନଥିବାରୁ ସବୁ କେତେଟା ବର୍ଷ ମଧ୍ୟରେ ବନ୍ଦ ହୋଇଗଲା । କୃଷକମାନଙ୍କ ଉନ୍ନତି ପାଇଁ ମଧୁବାବୁ ଏକ କୃଷକ ସମିତି ସ୍ଥାପନ କରିଥିଲେ, ମାତ୍ର ଏହା ବନ୍ଦ ହୋଇଗଲା । ସେ କଟକରେ ଏକ ଅଭିନବ ଯୋତା କାରଖାନା ବସାଇଥିଲେ, ଏ

କାରଖାନାର ସୁନାମ ଅନେକ ଇଉରୋପୀୟ କାରଖାନା ପକ୍ଷରେ ଈର୍ଷାର ବିଷୟ ହୋଇଥିଲା । ୧୯୨୫ ସାଲରେ ମହାତ୍ମା ଗାନ୍ଧୀ ଏ ଅନୁଷ୍ଠାନ ପରିଦର୍ଶନ କରିବା ପାଇଁ ଆସିଥିଲେ । ବର୍ତ୍ତମାନ ଏହା ନିଲାମ ହୋଇଯାଇଛି । ବ୍ୟବସାୟ ବା ଅନୁଷ୍ଠାନ ଏପରି କିଛି ନାହିଁ ଯେଉଁଥିରେ ମଧୁବାବୁ ହାତ ଦେଇ ନଥିଲେ ଓ ଯେଉଁଥିରେ ସେ ସଫଳକାମ ହୋଇଛନ୍ତି । ତାଙ୍କ ଜୀବନୀ ଲେଖାହେଲେ ଅତି କୌତୁହଳମୟ ଓ ଶିକ୍ଷାପ୍ରଦ ହେବ । ସେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରିଥିଲେ ଓ ଲକ୍ଷ ଲକ୍ଷ ଟଙ୍କା ଖରଚ କରି ଦେଇ ଥିଲେ, ତାର ସେ ହିସାବ ରଖୁନଥିଲେ । ସେ ସାଧାରଣ କାର୍ଯ୍ୟରେ ବହୁତ ଖର୍ଚ୍ଚ କରିଥିଲେ । ସାଧାରଣଙ୍କୁ ଶିକ୍ଷା ଦେବା ଭଳି ବ୍ୟବସାୟରେ ସେ ମଧ୍ୟ ବହୁତ ଖର୍ଚ୍ଚ କରିଥିଲେ । କୋଣାର୍କ ମନ୍ଦିର ପରି ସେ ମୃତ୍ୟୁ ପରେ ସୁଦ୍ଧା ମହାନ୍ ଓ ଗୌରବମୟ ହୋଇ ରହିଛନ୍ତି । ଦଶବର୍ଷ ଊଣା ଶହେ ବର୍ଷରେ ସେ ୧୯୩୪ ମସିହାରେ ଚାଲିଗଲେ ଓ ତାଙ୍କର ଜୀବନ ସହିତ ୧୯୨୧ ସାଲ ପୂର୍ବର ଓଡ଼ିଶାର ସାଧାରଣ ଜୀବନ ସଂଶ୍ଳିଷ୍ଟ ।

ଉତ୍କଳ ସମ୍ମିଳନୀ ସାଙ୍ଗେ ସାଙ୍ଗେ ଛାତ୍ରମାନଙ୍କର ମଧ୍ୟ ଗୋଟିଏ ଅନୁଷ୍ଠାନ ଥିଲା । ଛାତ୍ର ସମାଜ ବର୍ଷକୁ ଥରେ ଏକତ୍ର ହୁଅନ୍ତି ଏବଂ ମଝିରେ ମଝିରେ ବନ୍ୟା ଓ ଦୁର୍ଭିକ୍ଷ ସମୟରେ ସ୍ୱୟଂସେବକ ପଠାନ୍ତି । ଏହି ଛାତ୍ର ଅନୁଷ୍ଠାନ ୧୯୦୫ରେ ଆରମ୍ଭ ହୋଇଥିଲା, ସେତେବେଳେ ଭାରତରେ ଏହା ନୂତନ ଥିଲା । ବଙ୍ଗ ଓ ବିହାର ବହୁ ବର୍ଷପରେ ଛାତ୍ରମାନଙ୍କର ଏପରି ଅନୁଷ୍ଠାନ ଆରମ୍ଭ କରିଥିଲେ । ଏହି ଛାତ୍ରସଂଘର ନୀତି ଓ କାର୍ଯ୍ୟ ଉତ୍କଳ ସମ୍ମିଳନୀ ଦ୍ୱାରା ବହୁ ପରିମାଣରେ ପ୍ରଭାବିତ ହେଉଥିଲା ।

ସେତେବେଳେ ରାଜନୈତିକ ସାଧାରଣ ଜୀବନର ଢଙ୍ଗ ଏପରି ଥିଲା ଯାହାକୁ ଆଜିକାଲି ସୀମାତୀତ ଭାବରେ ରାଜଭକ୍ତି କୁହାଯିବ । ଆଜିକାଲିକାର ଯୁବକମାନେ ଏକଥା ଶୁଣି ଲଜ୍ଜିତ ହେବେ ଯେ ଏହି ପନ୍ଦରବର୍ଷ ଆଗରୁ ସେମାନଙ୍କର ବଡ଼ବଡ଼ଆ- ମାନେ ହିନ ରାଜଭକ୍ତିରେ କିଏ କାହାଠାରୁ ବଡ଼ ହେବ ଏଥି- ପାଇଁ ଚେଷ୍ଟା କରୁଥିଲେ । ସେତେବେଳକାର ନେତାମାନଙ୍କର ବକ୍ତୃତା ଓ ଆଚରଣରୁ ଯେପରି ଜଣାପଡ଼େ, ଦୃଷ୍ଟିର ପରିସର ଅତି ସଙ୍କୀର୍ଣ୍ଣ ଥିଲା, ତେଣୁ ଆଦୌ ମହାନୁଭବତା ନଥିଲା । ବଙ୍ଗଦେଶର ଅଙ୍ଗଚ୍ଛେଦ ଆନ୍ଦୋଳନରେ ବିଦେଶୀ ଶାସନ ପ୍ରତି ବିରୋଧଭାବ ମିଶାମିଶି ହୋଇଥିଲା; କିନ୍ତୁ ଓଡ଼ିଶାରେ ଆନ୍ଦୋଳନ ବିଦେଶୀ ଶାସକଠାରୁ ବରଂ ପ୍ରାୟ ଦେଶମିଶ୍ରଣ ମିଳିବାର ଆଶା କରାଯାଉଥିଲା । ତେଣୁ ବିଦେଶୀ ଶାସନ ଚନ୍ଦନ ପ୍ରାୟ ମଣୁ- ଥିଲେ । ଉନ୍ନତ ଆଦର୍ଶ ଓ ଉଦ୍ଦୀପନାମୟ ଅଭିଳାଷ ନଥିବାରୁ କର୍ମନିଷ୍ଠା ଅତି ସାମାନ୍ୟ ପରିମାଣରେ ଥିଲା । ସେତେବେଳେ ଜଣେ ମାତ୍ର ଲୋକ ଥିଲେ ଯେ କି କିଛି ନିର୍ଦ୍ଦିଷ୍ଟ କାର୍ଯ୍ୟ କରି ଯାଉଥିଲେ । ସେ ହେଉଛନ୍ତି ରାୟ ବାହାଦୁର ଗୌରୀଶଙ୍କର ରାୟ । ଅର୍ଦ୍ଧଶତାବ୍ଦୀର ଉପର ବୃଦ୍ଧ "ଉତ୍କଳ ଦୀପିକା" ଖବର କାଗଜ ଯୋଗୁଁ ସେ ସ୍ମରଣୀୟ ।

ଓଡ଼ିଶାର ଅବସ୍ଥା ପ୍ରବାହ ଶୂନ୍ୟ ଜଳଖଣ୍ଡ ପରି ଥିଲା । ବାୟୁମଣ୍ଡଳରେ ନବୀନତା ନଥିଲା; ତେଣୁ ଯୁବକର ଅଭିଳାଷ କ୍ଷୁଣ୍ଣ ହୋଇ ଯାଉଥିଲା । ଯଦି ସେ ସମୟରେ ଭାରତର ରାଜନୀତି ସହିତ ବୁଡ଼ିବା ବା ପାର ପାଇବା ପାଇଁ ଓଡ଼ିଶା ମନ କରିଥାନ୍ତା ତେବେ ଆଜି ତା'ର ସ୍ଥାନ କେଉଁଠି ହୋଇଥାନ୍ତା କିଏ କହି

ପାରିବ । ସଂକୀର୍ଣ୍ଣ ପ୍ରାଦେଶିକତା ଯୋଗୁଁ ଅନେକ ପ୍ରତିଭାଶାଳୀ ଲୋକ ଭାରତ ଇତିହାସରେ ସ୍ଥାନ ପାଇଲେ ନାହିଁ । ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ ଦାସ ଓ ତାଙ୍କର କେତେକ ସହକର୍ମୀଙ୍କ ଛଡ଼ା ଦେଶ ପାଇଁ ତ୍ୟାଗର ଭାବ ଅନ୍ୟତ୍ର ଲକ୍ଷିତ ହେଉ ନଥିଲା ।

ପଣ୍ଡିତ ଗୋପବନ୍ଧୁ ଉକିଲ ଥିଲେ, ସେ ଉତ୍ସାହୀ ଦେଶ-ପ୍ରେମୀ ଥିଲେ । କଲେଜରେ ପଢ଼ିବାବେଳୁଁ ବନ୍ୟା ସମୟରେ ଆର୍ତ୍ତସେବା କରି ସେ ବୁଝିଥିଲେ ଯାନଦୁଃଖୀ ସେବା କେଡ଼େ ମଧୁର ଓ ସୁଖମୟ । ଦୈବକ୍ରମେ ତାଙ୍କର ମନୋବୃତ୍ତି କେବଳ ସେବାପାଇଁ ଗଠିତ ହୋଇଥିଲା । ସେ ପ୍ରଥମେ ଶିକ୍ଷକ ଥିଲେ । ପରେ ଉକିଲ ହେଲେ,, କିନ୍ତୁ ସେ ଏହିସବୁ ଟଙ୍କା ରୋଜଗାରରେ କିଛି ଅସମ୍ପୂର୍ଣ୍ଣ ଦେଖିଲେ । ସେ ଉକିଲାତି ଛାଡ଼ି ଦେଲେ । ଗ୍ରାମରେ ଶିକ୍ଷା ପ୍ରଚାର ସମସ୍ୟାର ସମାଧାନ ପାଇଁ ସେ ବ୍ରତୀହେଲେ । ଦେଶ ସେବା ପାଇଁ କର୍ମୀ ତିଆରି କରିବା ତାଙ୍କର କାମ ହେଲା । ସେ ୧୯୧୨ ସାଲରେ ସତ୍ୟବାଦୀରେ ମୁକ୍ତ ଜୁଗୁଆଳ ବନରେ ବିଦ୍ୟାଳୟ ସ୍ଥାପନ କରାଇଲେ । ଭାରତରେ ଏ ବିଦ୍ୟାଳୟ ଯେ ପ୍ରତିଷ୍ଠା ଲାଭ କରିଥିଲା, ସେପରି ଖୁବ୍ କମ୍ ଶିକ୍ଷାନୁଷ୍ଠାନ ପାରିଛନ୍ତି । ବିହାର ଓଡ଼ିଶାର ଭୂତପୂର୍ବ ଲାଟ "ସାର ଏଡ଼ୱାର୍ଡ଼ ଗେଟ" ସତ୍ୟବାଦୀ ବିଦ୍ୟାଳୟକୁ ଏକାଧିକ ଥର ପରିଦର୍ଶନ କରି ତା'ର ବହୁତ ପ୍ରଶଂସା କରିଥିଲେ । ବହୁ ଶିକ୍ଷାପ୍ରବୀଣ ବ୍ୟକ୍ତି ଏ ବିଦ୍ୟାଳୟର କାର୍ଯ୍ୟ ଦେଖି ମୁଗ୍‌ଧ ହୋଇଥିଲେ । ଶେଷ ପର୍ଯ୍ୟନ୍ତ ଏ ବିଦ୍ୟାଳୟ ସରକାରୀ ସାହାଯ୍ୟ ନେଇ ନଥିଲା । ପ୍ରକୃତ ଶିକ୍ଷିତ ଲୋକ କେତେଜଣ ଏ ବିଦ୍ୟାଳୟରୁ ବାହାରିଥିଲେ ସେ କଥା କହିବା କଠିନ; କିନ୍ତୁ ଏହା ନିଃସନ୍ଦେହ ଯେ ଏ ଅନୁଷ୍ଠାନ ଓ

ଅନୁଷ୍ଠାନର ତ୍ୟାଗୀ କର୍ମୀ ଓଡ଼ିଶାରେ ନୂତନ ଜୀବନ ଓ ନୂତନ ଆଦର୍ଶ ସୃଷ୍ଟି କରିଥିଲେ ।

ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, କୃପାସିନ୍ଧୁ ମିଶ୍ର ତିନିଜଣ ଏମ୍. ଏ. ପାଶ କରି ସମସ୍ତ ଆଶା ଛାଡ଼ି ସତ୍ୟବାଦୀ ବିଦ୍ୟାଳୟରେ କାମ କରିଥିଲେ । ଆଚାର୍ଯ୍ୟ ହରିହର ଦାସ ସତ୍ୟବାଦୀ ବିଦ୍ୟାଳୟର ପିଣ୍ଡ ସ୍ୱରୂପ ଥିଲେ । ଏମାନେ ସମସ୍ତେ କେବଳ ଖୋରାକ ମାତ୍ର ନେଇ କାମ କରୁଥିଲେ । ଏହା ଓଡ଼ିଶାରେ ଏକ ନୂତନ ଆଦର୍ଶ ଥିଲା । ଧୀରେ ଧୀରେ ଏ ଆଦର୍ଶ ପ୍ରତି ଜନସାଧାରଣଙ୍କ ଚିତ୍ତ ଆକୃଷ୍ଟ ହେଉଥିଲା । ଉକ୍ତ କର୍ମୀମାନଙ୍କର ଉଚ୍ଚ ଅଭିଳାଷ ଥିଲା ଓ ସେମାନଙ୍କୁ ଓଡ଼ିଶାର ସଂକୀର୍ଣ୍ଣତା ବିରୋଧରେ ଖୁବ୍ ଲଢ଼ିବାକୁ ପଡ଼ିଥିଲା ।

ତତ୍କାଳୀନ ନେତାମାନଙ୍କ ସଂକୀର୍ଣ୍ଣତା ବିରୋଧରେ ପ୍ରତିକ୍ରିୟାର ଚିହ୍ନ ଏହି ସତ୍ୟବାଦୀ ବିଦ୍ୟାଳୟରେ ଦେଖା ଦେଇ ଥିଲା । ପଣ୍ଡିତ ଗୋପବନ୍ଧୁ ଖୁବ୍ ଉପରକୁ ଉଡ଼ିବା ପାଇଁ ମନ କରିଥିଲେ । ସେ ରୁଦ୍ଧପ୍ରକୋଷ୍ଠ ମଧ୍ୟରେ ଆବଦ୍ଧ ରହିବାକୁ ସୁଖ ପାଇଲେ ନାହିଁ । କିନ୍ତୁ ଚତୁର୍ଦ୍ଦିଗରେ ଯେ ବିରୁଦ୍ଧ ବାୟୁମଣ୍ଡଳ ତାକୁ ଏଡ଼ିବାକୁ ତାଙ୍କର ଶକ୍ତି ନଥିଲା ।

ପଣ୍ଡିତ ଗୋପବନ୍ଧୁ ରାଜନୀତିକୁ ଟଣା ହୋଇଥିଲେ । ମଧୁବାବୁଙ୍କ ସାହାଯ୍ୟରେ ସେ ବିହାର ଓଡ଼ିଶା ଲାଟସଭାର ସଦସ୍ୟ ନିର୍ବାଚିତ ହୋଇଥିଲେ । ସେଠାରେ ଗୋପବନ୍ଧୁ ବାବୁ ଖୁବ୍ ନାମ କରିଥିଲେ । ସେ ଉତ୍କୃଷ୍ଟ ବକ୍ତା ଥିଲେ ଓ ଦୁଃଖୀଙ୍କ ପ୍ରତି ଆନ୍ତରିକ ସମବେଦନା ଅନୁଭବ କରୁଥିଲେ ।

ତେଣୁ ଲିଟ୍ଟସଭା ଜରିଆରେ ସେ ଖୁବ୍ ଖ୍ୟାତି ଅର୍ଜନ କରିଥିଲେ । ସେ ଉତ୍କଳ ସମ୍ମିଳନୀରେ ପୂର୍ଣ୍ଣପୂର୍ଣ୍ଣ ଭାବରେ ଯୋଗ ଦେଇ କାର୍ଯ୍ୟ କରିଥିଲେ । ସମ୍ମିଳନୀରେ ଗୃହୀତ ହେଉଥିବା ପ୍ରସ୍ତାବମାନଙ୍କୁ କାମରେ ପରିଣତ କରିବା ପାଇଁ ସେ ଚେଷ୍ଟା କରିଥିଲେ । ସେ ପ୍ରାକୃତିକ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବୁଲି ଛଳ ଛଳ ଆଖିରେ ଦେଖିଥିଲେ ଯେ ଓଡ଼ିଆମାନେ ହିନ୍ଦି, ବଙ୍ଗଳା ବା ତେଲଙ୍ଗା ଭାଷା ଶିଖିବାକୁ ବାଧ୍ୟ ହେଉଛନ୍ତି ।

ଏସବୁ କାର୍ଯ୍ୟ ଦ୍ୱାରା ସତ୍ୟବାଦୀ ବିଦ୍ୟାଳୟ ପରି ବିରାଟ ଗଠନମୂଳକ କାର୍ଯ୍ୟରେ ପଣ୍ଡିତ ଗୋପବନ୍ଧୁଙ୍କର ଦୃଷ୍ଟି ପୂର୍ଣ୍ଣପୂର୍ଣ୍ଣ ରହିପାରି ନଥିବ ଏଥିରେ ସନ୍ଦେହ ନାହିଁ । ଭବିଷ୍ୟତରେ ବିଶାଳ ପରିଣାମ ଘଟାଇବ ଏପରି ଦୃଢ଼ ଗଠନମୂଳକ କାମ ସହିତ ରାଜନୈତିକ କାମ ଏକ ସଙ୍ଗେ ହୋଇପାରେ ନାହିଁ; ତଥାପି ପଣ୍ଡିତ ଗୋପବନ୍ଧୁ ଅକ୍ଳାନ୍ତ ପରିଶ୍ରମ କରି ଅଗ୍ରସର ହେଲେ । ସମ୍ଭବତଃ ସେତେବେଳକାର ଚତୁର୍ଦ୍ଦିଗର କୁହେଳିକା ମଧ୍ୟରେ ସେ ପଥ ପାଉ ନ ଥିଲେ । ପଣ୍ଡିତ ଗୋପବନ୍ଧୁ ସ୍ପଷ୍ଟ ବୁଝିଥିଲେ ଯେ ଭାରତୀୟ ମହାସଭାରେ ଯୋଗ ନଦେବା ଓଡ଼ିଶା ପକ୍ଷରେ ଆତ୍ମହତ୍ୟା କଲାପରି । ସନ ୧୯୧୬ ସାଲ ଲକ୍ଷ୍ନୌରେ ହୋଇଥିବା କଂଗ୍ରେସରେ ସେ ଯୋଗ ଦେଇଥିଲେ ଓ ସେଠାରେ ବିଷୟ ନିର୍ବାଚନୀ ସମିତିରେ ସ୍ଥାନ ପାଇଥିଲେ । ତତ୍ପରେ ବିହାର ଓଡ଼ିଶା ପ୍ରାଦେଶିକ କମିଟିର ଶାଖାରୂପେ ପୁରୀ ଜିଲାର ଜିଲା କଂଗ୍ରେସ କମିଟି ସ୍ଥାପନ କରିଥିଲେ । (ସେତେବେଳେ ଭାଷା ଭିତ୍ତିରେ ପ୍ରଦେଶ ବିଭାଗ ମହାସଭାରେ ନଥିଲା । ସରକାରୀ ପ୍ରଦେଶ ବିଭାଗ ଅନୁସାରେ ମହାସଭାର ପ୍ରଦେଶ ଥିଲା । ) କିନ୍ତୁ

ଏହା କେବଳ ନାମମାତ୍ର ହୋଇଥିଲା । ସାଧାରଣଙ୍କ ଦୃଷ୍ଟି ଏଥିପ୍ରତି ଆକୃଷ୍ଟ ହୋଇପାରି ନଥିଲା । ତଥାପି ଏଥିରୁ ସ୍ପଷ୍ଟ ଜଣାଯିବ ଯେ, ଗୋପବନ୍ଧୁ ନାନାଦି ସ୍ଥାନୀୟ କାର୍ଯ୍ୟରେ ବ୍ୟାପୃତ ଥିଲେ ମଧ୍ୟ ସଙ୍କୀର୍ଣ୍ଣ ପ୍ରାଦେଶିକତାରୁ ବାହାରି ଯିବାପାଇଁ ସେ ମନ କରୁଥିଲେ । ୧୯୨୦ ସାଲ୍‌ର କଲିକତା ମହାସଭାର ବିଶେଷ ଅଧିବେଶନ ହୋଇ ପରେ ଯେ ଘଟଣା ସବୁ ଘଟିଲା ସେ ଘଟଣା ସହିତ ସମ୍ବନ୍ଧ ଥିବା ବିଷୟମାନଙ୍କ ମଧ୍ୟରୁ ଗୋପବନ୍ଧୁଙ୍କର ମନୋବୃତ୍ତି ଅନ୍ୟତମ ।

ଆଉ ଏକ ବିଷୟ ହେଉଛି ଯୁବକମାନେ ଅସ୍ଥିର ହୋଇ ପଡ଼ିଥିଲେ । ବଡ଼ ବଡ଼ ମାନେ ବାହାର ଜଗତରୁ ନିଜକୁ ନିଜେ ଅଲଗା ରଖିଥିଲେ ମଧ୍ୟ ଉଚ୍ଚ ଆଦର୍ଶ ଓ ଦୂରଦୃଷ୍ଟି ଯୁବକମାନଙ୍କ ମନକୁ ଆକର୍ଷଣ କରୁଥିଲା । ଅଲଗା ହୋଇ ରହିବାର ଅସ୍ୱାଭାବିକ ନୀତି ଓ କର୍ମନିଷ୍ଠାର ଅଭାବ ଯୁବକମାନଙ୍କୁ ବିରକ୍ତିକର ବୋଧ ହୋଇଥିଲା । ୧୯୧୮ ସାଲରେ ଯେତେବେଳେ ଶ୍ରୀଯୁକ୍ତ ଯଦୁମଣି ମଙ୍ଗରାଜଙ୍କ ନେତୃତ୍ୱରେ ଛାତ୍ରମାନେ ମଧୁବାବୁଙ୍କ ନୀତି ବିରୁଦ୍ଧରେ ଛାତ୍ର ସମ୍ମିଳନୀରେ ବିଦ୍ରୋହ କରାଇଲେ, ସେତେବେଳେ ଯୁବକଙ୍କର ମନୋଭାବ ବେଶ୍ ଜଣା ପଡ଼ିଥିଲା । ଉତ୍କଳ ସମ୍ମିଳନୀ ସାଙ୍ଗରେ ଛାତ୍ର ସମ୍ମିଳନୀ ହେବାର ଥିଲା । ଛାତ୍ର ସମ୍ମିଳନୀରେ ମଧୁବାବୁଙ୍କର ସଭାପତି ହେବାର ଥିଲା । ମାତ୍ର ଅନେକ ଛାତ୍ର ମଧୁବାବୁଙ୍କ ନୀତିକୁ ପସନ୍ଦ କରୁ ନଥିଲେ । ତେଣୁ ସେମାନେ ଅଲଗା ହୋଇ ଆଉ ଗୋଟିଏ ସମ୍ମିଳନୀ କଲେ । ଓଡ଼ିଶାର କେହି ନେତା ଏପରିକି ପଣ୍ଡିତ ଗୋପବନ୍ଧୁ ଦାସ ସେମାନଙ୍କୁ ସାହାଯ୍ୟ କରି ନଥିଲେ । ସେତେବେଳେ ଏହା ସାମାନ୍ୟ ଘଟଣା ନ ଥିଲା, କାରଣ ମଧୁବାବୁଙ୍କ ବିରୁଦ୍ଧ ହେବା ଚିନ୍ତାର ଅତୀତ ବ୍ୟାପାର

ଥିଲା । ଯୁବକମାନଙ୍କର ଏହା କ୍ଷଣିକ ଉଚ୍ଛ୍ୱାସ ମାତ୍ର ଥିଲା । ମାତ୍ର 'ରାଉଲାଟ୍ ଆଇନ' ବିରୋଧରେ ସତ୍ୟାଗ୍ରହ ଘୋଷଣା ଯେଉଁ ବର୍ଷ କରାହୋଇଥିଲା ସେହି ସନ ୧୯୧୯ ସାଲ ପରେ ଓଡ଼ିଶାର ଯୁବକ ମନୋରାଜ୍ୟରେ ପ୍ରଚଣ୍ଡ ପରିବର୍ତ୍ତନ ଆସିଥିଲା । ଭାରତୀୟପୂ ହିସାବରେ ସବୁକଥା ଭାବିବାର ଅବକାଶ ସତ୍ୟାଗ୍ରହ ଆଣି ଦେଇଥିଲା । ଏହା ଯୁବକ ପ୍ରାଣରେ ଉଚ୍ଚ ଧରଣର ଦେଶ ପ୍ରେମିକତାର ଜାଗରଣ କରିଥିଲା । ଅବଶ୍ୟ ଏ ପରିବର୍ତ୍ତନ ହଠାତ୍ ଉପରେ ଦେଖାଯାଇ ନଥିଲା । ମାତ୍ର ଧୀରେ ଧୀରେ ଦୃଢ଼ଭାବରେ ଏହା କାର୍ଯ୍ୟ କରିଥିଲା ।

୧୯୧୯ ସାଲରେ ଯୁବକମାନଙ୍କ ଦ୍ୱାରା ବିଶେଷତଃ ଛାତ୍ରମାନଙ୍କ ଦ୍ୱାରା ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀଙ୍କ ଉତ୍ସାହରେ 'ଭାରତୀମନ୍ଦିର' ନାମକ ଗୋଟିଏ ଅନୁଷ୍ଠାନ କଟକରେ ସ୍ଥାପିତ ହୋଇଥିଲା । ଗୋପବନ୍ଧୁ ଚୌଧୁରୀ ସେତେବେଳେ ସରକାରୀ ଚାକିରିଆ । ଚିନ୍ତାର ପରିସର ବଢ଼ାଇବା ପାଇଁ ଓ ଉଚ୍ଚ ଜାତୀୟତା ଭାବ ପ୍ରଚାର ପାଇଁ ଏ ଅନୁଷ୍ଠାନ ଆରମ୍ଭ ହୋଇଥିଲା । ଅନେକ ବହି ସଂଗ୍ରହ କରା ହୋଇଥିଲା ଓ ଭିନ୍ନ ଭିନ୍ନ ପ୍ରଦେଶର ଅନେକ ଖବର କାଗଜ ଅଣା ହୋଇଥିଲା । ଛାତ୍ରମାନେହିଁ ପ୍ରାୟ କେବଳ ଏଥିରେ କାମ କରୁଥିଲେ । ଛାତ୍ରମାନଙ୍କୁ ଓ ଓକିଲମାନଙ୍କୁ ବୁଝାଇସୁଝାଇ 'ଭାରତୀମନ୍ଦିର'କୁ ଆଣି ବହି ଓ ଖବର କାଗଜ ପଢିବାକୁ ଦିଆହେଉଥିଲା । ୧୯୨୧ ସାଲରେ ସାବରମତୀରୁ ଯେଉଁ 'ବିଦ୍ୟୁତ' ଭାରତବ୍ୟାପୀ ଖେଳିଲା ସେ 'ବିଦ୍ୟୁତ୍' ଧରିରଖି ଚାରିଆଡ଼େ ବିସ୍ତାର କରିଦେବା ପାଇଁ 'ଭାରତୀମନ୍ଦିର' ଗୋଟିଏ ବଳଶାଳୀ ଯନ୍ତ୍ରପରି କାର୍ଯ୍ୟ କରିଥିଲା । ଓଡ଼ିଶାର ତତ୍କାଳୀନ ସଂକୀର୍ଣ୍ଣ ପ୍ରାଦେଶିକତାର ତଳେ ଏହି ବିଷୟ ସବୁ ଗୋପନରେ ଥିଲା । କଲିକତା ପ୍ରସ୍ତାବ କିପରି ଗୃହୀତ ହେଲା ଦେଖାଯାଉ ।

## ତିନି

କଲିକତାରେ ଗୃହୀତ ହୋଇଥିବା ଅସହଯୋଗ ପ୍ରସ୍ତାବର ଦେଶରେ ବହୁ ବିରୋଧ ଥିଲେ ମଧ୍ୟ ଲାଟ ସଭାମାନଙ୍କର ନିର୍ବାଚନ ବର୍ଜନ ବିଷୟକୁ ସବୁ କଂଗ୍ରେସ ଲୋକ ମାନି ନେଇଥିଲେ । ଯେଉଁମାନେ ମହାତ୍ମାଗାନ୍ଧୀଙ୍କର ବା ଅନ୍ୟ ବିପ୍ଳବାତ୍ମକ କାର୍ଯ୍ୟର ବିରୋଧ କରୁଥିଲେ; ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କଠାରୁ ଆରମ୍ଭକରି ପଣ୍ଡିତ ମଦନମୋହନ ମାଲବ୍ୟ ପର୍ଯ୍ୟନ୍ତ ମହାସଭାର ପ୍ରସ୍ତାବ ମାନି ନିର୍ବାଚନ ବର୍ଜନ କରିଥିଲେ । ଓଡ଼ିଶାର ପଣ୍ଡିତ ଗୋପବନ୍ଧୁ ନିଯୁକ୍ତିତ କଂଗ୍ରେସ ଲୋକ ନଥିଲେ ସୁଦ୍ଧା ଲାଟସଭା ନିର୍ବାଚନ ବର୍ଜନ କରିଥିଲେ । ଲେଖକ ତେତେବେଳେ କଟକ କଲେଜରେ ବି.ଏ. କ୍ଲାସରେ ପଢ଼ୁଥିଲି । —ସେ 'ଭାରତୀମନ୍ଦିର' ତରଫରୁ କଲିକତା କଂଗ୍ରେସ ଦେଖିବାକୁ ଯାଇଥିଲି, କଲିକତାର ଅସହଯୋଗ ପ୍ରସ୍ତାବ ସନ୍ଦେହାପନ୍ନ ଯୁବକମାନଙ୍କ ମନରେ ଆଘାତ ଦେଲି ସତ ମାତ୍ର ବଙ୍ଗଦେଶରେ ସେ ପ୍ରସ୍ତାବ ପ୍ରତି ପ୍ରବଳ ବାଧା ଓଡ଼ିଶାରେ ସେ ପ୍ରସ୍ତାବକୁ କାର୍ଯ୍ୟକାରୀ କରାଇ ଦେଲି ନାହିଁ । କାରଣ ବଙ୍ଗ ଓ ଓଡ଼ିଶା ପରସ୍ପର ସଂଲଗ୍ନ । ଆଉ ମଧ୍ୟ ଉଭୟର ସାମଞ୍ଜସ୍ୟ ଅଛି । ଯାହେଉ ଯୁବକମାନେ ଭାରତୀୟ ସମସ୍ୟାର ଅନୁଧାବନ କଲେ ଓ ନାଗପୁର ମହାସଭାରେ କଅଣ ସ୍ଥିର ହେବ ଅନାଇ ବସିଲେ । ୧୯୨୦ ସାଲ ଡ଼ିସେମ୍ବର ମାସରେ ନାଗପୁରରେ ମହାସଭା ବସିଲି । ପୁରୀର ପ୍ରସିଦ୍ଧ ଓକିଲ

ଶ୍ରୀ ଜଗବନ୍ଧୁ ସିଂହଙ୍କ ସଭାପତିତ୍ୱରେ ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ୧୫ଶ ଅଧିବେଶନ ମହାସଭା ଶେଷ ହେବାର ୨।୩ ଦିନ ପରେ ହେବାର ଥିଲା । ସେଇଠି ଛାତ୍ର ସମ୍ମିଳନୀ ଶ୍ରୀ ବିଶ୍ୱନାଥ କରଙ୍କର ସଭାପତିତ୍ୱରେ ହେବାର ଥିଲା ।

ଏଥର ନାଗପୁରରେ ୧୦।୧୨ ଜଣ ପ୍ରତିନିଧି ଓଡ଼ିଶା ତରଫରୁ ମହାସଭାରେ ଯୋଗ ଦେଇଥିଲେ । ଉତ୍କଳ ସମ୍ମିଳନୀର ତିନିଜଣ ବିଶିଷ୍ଟ ନେତା ପଣ୍ଡିତ ଗୋପବନ୍ଧୁ ଦାସ, ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ଓ ଶ୍ରୀ ମୁକୁନ୍ଦପ୍ରସାଦ ଦାସ ମହାସଭାରେ ଯୋଗ ଦେଇଥିଲେ । ଯୁବକମାନଙ୍କ ମଧ୍ୟରୁ ଓକିଲ ଭଗିରଥୀ ମହାପାତ୍ର, ଶ୍ରୀ ଯଦୁମଣି ମଙ୍ଗରାଜ ଓ ଲେଖକ ଯୋଗ ଦେଇଥିଲେ । ଏମାନେ ସମସ୍ତେ 'ଭାରତୀମନ୍ଦିର' ସହିତ ସମ୍ପୃକ୍ତ ଥିଲେ । ନାଗପୁରରେ ଯେ ମହାତ୍ମାଙ୍କର ପ୍ରଧାନ ବିରୋଧୀ ସେ ତାଙ୍କର ଶିଷ୍ୟ ପାଲଟି ଗଲେ । ଦେଶବନ୍ଧୁ ଚିତ୍ତରଞ୍ଜନ ନିଜେ ଅସହ-ଯୋଗର ପ୍ରସ୍ତାବ ଆଗତ କଲେ । ଏହା ଦେଶବ୍ୟାପୀ ଏକ ଶୃଙ୍ଖଳା ଆଣିଦେଲା । ନାଗପୁର ମହାସଭା ଭାରତର ଇତିହାସକୁ ବଦଳାଇ ଦେଲା । ମହାସଭାର ସଙ୍ଗଠନକୁ ଏପରି ପରିବର୍ତ୍ତିତ କରି ଦିଆଗଲା ଯେଉଁଥିରେ ଏହା ଦେଶବ୍ୟାପୀ ପ୍ରତିନିଧିମୂଳକ ଅନୁଷ୍ଠାନ ହୋଇପାରିବ । ମହାତ୍ମାଙ୍କ ତୂର୍ଯ୍ୟ ନିର୍ଘୋଷ ଆମର ରକ୍ଷଣଶୀଳ ଓଡ଼ିଶା ସମେତ ସମଗ୍ର ଦେଶକୁ ଶତାବ୍ଦୀବ୍ୟାପୀ ଘୋର ନିଦ୍ରାରୁ ଜଗାଇଦେଲା । ଓଡ଼ିଶାର ସଙ୍କୀର୍ଣ୍ଣତା ଏଇଥିରେ କୁଆଡ଼େ ଭାସି ଚାଲିଗଲା । ଯେଉଁ ନେତାମାନେ ଏ ସଙ୍କୀର୍ଣ୍ଣତାକୁ ଧରି ରଖିଥିଲେ ସେମାନେ ତଳେ ପଡ଼ିଗଲେ । ସେତେବେଳେ ଦେଶର କି ପରିବର୍ତ୍ତନ !

## ଗ୍ୟାର

ପଣ୍ଡିତ ଗୋପବନ୍ଧୁ, ଶ୍ରୀ ଜଗବନ୍ଧୁ ସିଂହ ଓ ଶ୍ରୀ ମୁକୁନ୍ଦ-ପ୍ରସାଦ ଦାସ ଚକ୍ରଧରପୁର ଉତ୍କଳ ସମ୍ମିଳନୀରେ ଯୋଗଦେବା ପାଇଁ ନାଗପୁରରୁ ତରତର ହୋଇ ଚାଲିଆସିଲେ । ସେଇଠି ବିଦ୍ରୋହ ଘୋଷଣା କରାହେଲା । ପୁରାତନ ମତ ବଦଳିଗଲା । ପଣ୍ଡିତ ଗୋପବନ୍ଧୁ ଦାସ କହିଗଲେ ସେ ପ୍ରସ୍ତାବ କଲେ ଯେ, ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ସାମାନ୍ୟ ଦେଶମିଶ୍ରଣ ପରିବର୍ତ୍ତରେ ଭାରତ ମହାସଭାର ଉଦ୍ଦେଶ୍ୟ ସ୍ୱରାଜ୍ୟ ପ୍ରାପ୍ତି ହେଉ, ଏ ପ୍ରସ୍ତାବର ବିପୁଳ ବିରୋଧ ହୋଇଥିଲା । କିନ୍ତୁ ନ୍ୟାଯ୍ୟ ନିର୍ମଳ ଶାନ୍ତିପୂର୍ଣ୍ଣ ଉପାୟରେ ସ୍ୱରାଜ୍ୟପ୍ରାପ୍ତି ସମ୍ମିଳନୀର ଉଦ୍ଦେଶ୍ୟ ହେବାର ସ୍ଥିର ହେଲା । ସେଇଠି ପୁରାତନ ନେତା-ମାନେ ବୁଝିଲେ ଯେ ସେମାନଙ୍କର ଦେଶରେ ପ୍ରତିପତ୍ତି ଖୁବ୍ କମ୍ । ସେମାନେ ଅପଦସ୍ଥ ହୋଇ ଫେରିଲେ, ମାତ୍ର କୌଣସି ପ୍ରକାରେ ପୁନଃ ପ୍ରତିଷ୍ଠାର ଆଶା ପୋଷଣ କରିଥିଲେ । ସେମାନେ ପୁରା ବୁଝି ନ ଥିଲେ ଯେ ସେମାନଙ୍କର ଅଲଗା ହୋଇ ରହିବା ମତକୁ ଦେଶ ପସନ୍ଦ କରୁନାହିଁ । ସେହିପରି ପୁରୀ ସମ୍ମିଳନୀରେ ମଧ୍ୟ ବିପ୍ଳବ ଘଟିଥିଲା । ସମ୍ମିଳନୀର ସଭାପତି ସ୍ୱର୍ଗତ ବିଶ୍ୱନାଥ କର ଆସନ ଛାଡ଼ି ଚାଲିଗଲେ ଯେତେବେଳେ ସମ୍ମିଳନୀ ଉଦ୍ଦେଶ୍ୟ ପରିବର୍ତ୍ତନର ପ୍ରସ୍ତାବ ଆଗତ ହେଲା; କିନ୍ତୁ ଦେଖାଗଲା ଯେ ସଭାପତିଙ୍କ ପଛକୁ କେହି ନ ଥିଲେ ।

ଯେପରି ଜଣାଗଲା ନେତାମାନଙ୍କ ପ୍ରତିପତ୍ତି ଜନମତ ଉପରେ ପ୍ରତିଷ୍ଠିତ ନଥିଲା; କିନ୍ତୁ ଯେତେବେଳେ ମହାତ୍ମା ଗାନ୍ଧୀଙ୍କ ମନ୍ତ୍ରରେ ସୁପ୍ତ ଜନମତ ଜାଗ୍ରତ ହେଲା, ସେତେବେଳେ ଏହା ଗତିଶୀଳ ହୋଇ ଯେଉଁମାନେ ଏହାକୁ ଚୁପି ବସିଥିଲେ ସେମାନଙ୍କୁ ଫୋପାଡ଼ି ଦେଲା ।

ପଣ୍ଡିତ ଗୋପବନ୍ଧୁ ଏତେ କଥା କଲେ, ମାତ୍ର ସେ ନିଜେ ଭାବନାରେ ଲାଗିଲେ ଓଡ଼ିଶା ଭାରତୀୟ ଜାତୀୟ ସଂଗ୍ରାମରେ ଯୋଗଦେବା ଉଚିତ କି ନାହିଁ । ପଣ୍ଡିତ ଗୋପବନ୍ଧୁ ଦେଶମିଶ୍ରଣ ପାଇଁ ବ୍ୟାକୁଳ ଥିଲେ । ଓଡ଼ିଶା ନେତାମାନଙ୍କ ମତରେ ମହାସଭାରେ ଯୋଗଦେଲେ ଦେଶମିଶ୍ରଣରେ ବାଧା ପଡ଼ିବ । ଆଗେ ନିଜେ ନିଜକଥା ଠିକ୍ କରି ତା’ପରେ ଅନ୍ୟମାନଙ୍କ ସହିତ ଯୋଗଦେବା ଏହାହିଁ ନେତାମାନଙ୍କର ପରାମର୍ଶ ଥିଲା । ଏ ମତ ଏତେ ପ୍ରବଳ ଥିଲା ଯେ ଗୋପବନ୍ଧୁ ଚକ୍ରଧରପୁରରେ ଗୋଳ ଆରମ୍ଭ କରିଦେଲେ ମଧ୍ୟ ନିଜ ମନକୁ ହଠାତ୍ ଦୃଢ଼କରି ପାରିନଥିଲେ । ଚକ୍ରଧରପୁରରୁ ଫେରି କଲିକତା ଓଡ଼ିଆ ଛାତ୍ରାବାସରେ ଗୋପବନ୍ଧୁ କିଛିଦିନ ରହିଥିଲେ । ସେଠାରେ ସେ ଉକ୍ତ ବିଷୟକୁ ଆଲୋଚନା କରି ଯୁବକମାନଙ୍କ ସହିତ ବହୁ ପରାମର୍ଶ କରିଥିଲେ । କାରଣ ବେପରୱା ଯୁବକର ବୟସ ତାଙ୍କର ଅତିକ୍ରମ ହୋଇଯାଇଥିଲା ।

ଏହିପରି ଉତ୍କଳ ସମ୍ମିଳନୀରେ ଜନମତ ଜୟଲାଭ କରିଥିଲା । କଟକର ଯୁବକ ଓକିଲ ଶ୍ରୀଯୁକ୍ତ ଭଗିରଥୀ ମହାପାତ୍ର ନାଗପୁର ମହାସଭାରୁ ଓକିଲାତି ଛାଡ଼ିବେ ବୋଲି କୃତସଂକଳ୍ପ ହୋଇ ଆସିଥିଲେ । ତାଙ୍କର ସାହସ ‘ଭାରତମାତାର’ର ଅନ୍ୟାନ୍ୟ

ଯୁବକମାନଙ୍କୁ ଖୁବ୍ ସାହାଯ୍ୟ କରିଥିଲି । ୧୯୨୧ ସାଲ ଜାନୁୟାରୀରେ ମଧୁବାବୁ ଇଂରେଜ ସରକାରଙ୍କର ମନ୍ତ୍ରୀ ହୋଇଛନ୍ତି ବୋଲି ଜଣାଗଲା । ଏ ସମ୍ବାଦ ଜନସାଧାରଣଙ୍କ ମଧ୍ୟରେ କୌଣସି ପ୍ରକାର ଆନନ୍ଦର ଭାବ ଆଣି ନଥିଲା; କିନ୍ତୁ ଜନମତ କଅଣ ତାହା ନଜାଣି କେତେକ ମଧୁବାବୁଙ୍କ ଭକ୍ତ ଓ ବନ୍ଧୁ ମଧୁବାବୁଙ୍କ ମନ୍ତ୍ରୀ ନିଯୁକ୍ତିରେ ଆନନ୍ଦ ପ୍ରକାଶ କରିବାପାଇଁ ଗୋଟିଏ ସାଧାରଣ ସଭା ଆହ୍ୱାନ କଲେ । 'ଭାରତୀ ମନ୍ଦିର' ଦଳ ଭାବିଲେ ଯେ ଏହା ହେଉଛି ସମୟ ଯେତେବେଳେ ପୁରାତନ ମତିକୁ ସମୂଳେ ଉତ୍ପାଟନ କରିଦେବାକୁ ହେବ । ପାଠକେ ଜାଣନ୍ତୁ ଯେ, 'ଭାରତୀ ମନ୍ଦିର' କେବଳ ଗୋଟିଏ ଓ କେତେଜଣ ଯୁବକ ଓକିଲଙ୍କର ଅନୁଷ୍ଠାନ । ମଧୁବାବୁଙ୍କ ପ୍ରତିପତ୍ତିର କେନ୍ଦ୍ର କଟକ ସହରରେ କିପରି ଏ ଯୁବକ କେତେଜଣ ମଧୁବାବୁଙ୍କ ବନ୍ଧୁ-ମାନଙ୍କର ତୁମୁଳ ପ୍ରତିରୋଧ କରିଥିଲେ ତାହା ବର୍ଣ୍ଣନା କରିବା କଠିନ । 'ଭାରତୀ ମନ୍ଦିର'ର ବିଜ୍ଞାପନମାନ କୌଣସି ଛାପାଖାନା ଛାପିବାକୁ ରାଜି ହେଲା ନାହିଁ । ଅବଶେଷରେ ଗୋଟିଏ ଭଙ୍ଗା ଛାପାଖାନା ଛାପାଖାନାର ନାମ ଓ ମୁଦ୍ରାକର ନାମ ନ ଦେଇ ଛାପିବାକୁ ରାଜି ହେଲା । ଲେଖକର ମନେଅଛି କିପରି ରାତିରେ ଗୋଟିଏ ଇଂରାଜୀ ବିଜ୍ଞାପନ ୧୦ ହଜାର ଖଣ୍ଡ ଓ ଖଣ୍ଡିଏ ଓଡ଼ିଆ ବିଜ୍ଞାପନ ୨୦ ହଜାର ସେହି ଭଙ୍ଗା ଛାପାଖାନାରୁ ଛାପି ଆଣିଥିଲା । ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନଗୋ, ଶ୍ରୀଯୁକ୍ତ ଯଦୁମଣି ମଙ୍ଗରାଜ, ଶ୍ରୀ ନବକୃଷ୍ଣ ଚୌଧୁରୀ ଏମାନେ ଗୃହିଆଡ଼େ ବୁଲି ଘରେ ଘରେ ମଧୁବାବୁଙ୍କ ମନ୍ତ୍ରୀ ନିଯୁକ୍ତି ବିରୋଧରେ ପ୍ରଚାର କରିଥିଲେ । ସାଧାରଣ ସଭାରେ କି ନିୟମରେ କାର୍ଯ୍ୟ ପରିଚାଳିତ ହୁଏ ସେ ନିୟମମାନ ପଢ଼ା ହୋଇ ମୁଖସ୍ଥ ହେଲା । ସେତେବେଳେ ଯୁବକର

ଉତ୍ସାହ ଓ ଅସ୍ଥିରତା ବର୍ଣ୍ଣନା କରାଯାଇ ପାରିବ ନାହିଁ । ସଭା ଦିନ ପଞ୍ଚାଏ ପ୍ରବୀଣ ନେତାଙ୍କ ବିପକ୍ଷରେ ଯୁବକମାନେ ଛିଡ଼ା ହେଲେ । ଏ ନେତାମାନଙ୍କର ବହୁବର୍ଷବ୍ୟାପୀ ସାଧାରଣ କ୍ଷେତ୍ରରେ ଅଭିଜ୍ଞତା ଥିଲା । ଶେଷରେ ଏମାନେ ବହୁ ବାକ୍‌ଯୁଦ୍ଧ ପରେ ସଭାଛାଡ଼ି ଚାଲିଗଲେ । ୧୦ ହଜାର ଲୋକଙ୍କ ମଧ୍ୟରୁ ପ୍ରାୟ ବାରଜଣ ନେତାମାନଙ୍କ ପଛେ ପଛେ ଚାଲିଗଲେ । ଯୁବକ-ମାନଙ୍କର ଜିତ୍ ହେଲା । ମଧୁବାବୁଙ୍କ ମନ୍ତ୍ରୀତ୍ୱକୁ ନିନ୍ଦା କରି ଏକ ପ୍ରସ୍ତାବ ଅତି ଉତ୍ସାହ ସହକାରେ ଗୃହୀତ ହେଲା । ମନ୍ତ୍ରୀଙ୍କର କ୍ଷମତା ବଳରେ କେତେକ ଛାତ୍ରମାନଙ୍କୁ ଅଡ଼ୁଆରେ ପକାଇବା ପାଇଁ ଚେଷ୍ଟା କରିଥିଲେ । ମାତ୍ର ସେମାନଙ୍କୁ ଜଣା ନଥିଲା ଯେ ଏ ଯୁବକମାନେ କୌଣସି ବିପଦକୁ ସେତେବେଳେ ଗ୍ରାହ୍ୟ କରୁ ନଥିଲେ । ଯାହେଉ ଏଇଠି ପୁରୁଣା କୁପମଣ୍ଡୁକ ନୀତିର ଶେଷ ହେଲା । ଏ ଘଟଣା ପରେ କଟକ ଆସି ମହାସଭାର ପ୍ରାଦେଶିକ ଶାଖା ଗଠନ କରିବାପାଇଁ ପଣ୍ଡିତ ଗୋପବନ୍ଧୁ ବାବୁଙ୍କୁ ଲେଖାଗଲା ।

ସେ ସମୟରେ କଟକରେ ଏପରି ହେଉଥିଲା, ପ୍ରାୟ ଠିକ୍ ସେହି ସମୟରେ ଖବରକାଗଜରେ ବାହାରିଲା ଯେ ସମ୍ବଲପୁର ସରକାରୀ ହାଇସ୍କୁଲର ଛାତ୍ରମାନେ ମହାସଭାର ନିର୍ଦ୍ଦେଶ ମାନି ସ୍କୁଲ ଛାଡ଼ି ବାହାରି ଆସି ଅଛନ୍ତି । ଓଡ଼ିଶା ପକ୍ଷରେ ଏହା ଗର୍ବର ବିଷୟ ଯେ କଲିକତାରେ ଛାତ୍ରମାନଙ୍କୁ ସରକାରୀ ସ୍କୁଲ କଲେଜ ଛାଡ଼ିବା ପାଇଁ ମତାଇବାବେଳେ ସେଠାକାର ନେତାମାନେ ସମ୍ବଲପୁରର ସାହସୀ ଛାତ୍ରମାନଙ୍କର ଉଦାହରଣ ଦେଇଥିଲେ ।

ଏଥିରୁ ଜଣାପଡ଼ିବ ଯେ ମନ୍ତ୍ରକଳ୍ପର ଗାନ୍ଧିଜୀ ଯୁବକର ମନକୁ ଆକର୍ଷଣ କରିନେଲେ ! ସେ ଆକର୍ଷଣ କୌଣସି ବାଧା ମାନି ନଥିଲା ।

ଗୋପବନ୍ଧୁ ଓଡ଼ିଶାର ଗୃହଆଙ୍ଗେ ଏପରି ଘଟୁଥିବାର ଶୁଣି ଆନନ୍ଦରେ ଅଧୀର ହୋଇ ଉଠିଲେ । ସେ କୃତସଂକଳ୍ପ ହୋଇ ନିଜର ଯାହାକିଛି ସବୁଥିରେ ଜଳାଞ୍ଜଳି ଦେଇ ସଂଗ୍ରାମରେ ଯୋଗଦେଲେ । ସେ ଓଡ଼ିଶାର ସେନାପତି ନିର୍ବାଚିତ ହେଲେ । ଓଡ଼ିଶା ଭାରତୀୟ ଜାତୀୟ ସଂଗ୍ରାମରେ ଯୋଗ ଦେଲା ।

ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ ସ୍ୱରାଜ୍ୟପ୍ରାପ୍ତି ପାଇଁ ଅହିଂସାଜନକ ଉପାୟ ହିଁ ଏକମାତ୍ର ଔଷଧ ଯାହା ବହୁଦିନ ଯାବତ୍ ପୀଡ଼ିତ ଅଥଚ ପୀଡ଼ିତ ବୋଲି ନିଜେ ଅଜ୍ଞ ଏପରି ରୋଗୀକୁ ଦିଆଯାଇ ପାରିଥାନ୍ତା । କୌଣସି ହିଂସାତ୍ମକ ପ୍ରଣାଳୀ ଠିକ୍ ଖାପ ଖାଇ ନଥାନ୍ତା । ଅହିଂସା ଯେ ସୁପ୍ତ ଶକ୍ତିକୁ ଜାଗ୍ରତ କରିଦେଲା, ତାହା ହିଂସା କରିପାରିନଥାନ୍ତା । ଓଡ଼ିଶାରେ ତ ମୂଳଟା କେବଳ ଗୁରୁଙ୍କର କାର୍ଯ୍ୟଥିଲା । ଶେଷରେ କଅଣ ହେଲା ଦେଖାଯାଉ ।

# ପାଞ୍ଚ

ସନ ୧୯୨୧ ଜାନୁୟାରୀ ଫେବ୍ରୁୟାରୀ ମାସରେ ଅସହଯୋଗ ଆନ୍ଦୋଳନର ପ୍ରଥମ ବେଗରେ କଟକ କଲେଜର ଛାତ୍ରମାନେ ଧର୍ମଘଟ କରିଥିଲେ । ଏ ଧର୍ମଘଟ ଯେପରି ସ୍ୱାଭାବିକ, ଅତିଶୀଘ୍ର ଶେଷ ହୋଇ ଯାଇଥିଲା । ମାତ୍ର ପ୍ରାୟ ୭୦ଜଣ ଛାତ୍ର ଅସହଯୋଗ କରିଥିଲେ । ଏମାନଙ୍କ ମଧ୍ୟରୁ ପ୍ରାୟ ୩୦ଜଣ ମହାସଭାର କାର୍ଯ୍ୟ କରିଥିଲେ । କଲିକତାରେ ୪ଜଣ ଏମ୍. ଏ. ଓ ଓକିଲାତି ପଢ଼ୁଥିବା ଛାତ୍ର ସହଯୋଗ କରି ମହାସଭାର କାମ କରିଥିଲେ । ଛଅଜଣ ଓକିଲ ମୁକ୍ତାର ଅସହଯୋଗ କରିଥିଲେ । ଚନ୍ଦ୍ରଧରପୁର ଉତ୍କଳ ସମ୍ମିଳନୀର ସଭାପତି ଶ୍ରୀ ଜଗବନ୍ଧୁ ସିଂହ ଓକିଲାତି ବ୍ୟବସାୟ ବନ୍ଦ କରିଦେଇଥିଲେ । ବାକି ଅସହଯୋଗ କରିଥିବା ଅନ୍ୟ ଆଇନ ବ୍ୟବସାୟୀମାନେ ଉଣା ଅଧିକେ 'ଭାରତୀ ମନ୍ଦିର' ସହିତ ସମ୍ପୃକ୍ତ ଥିଲେ । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଡେପୁଟି ମାଜିଷ୍ଟ୍ରେଟ କାମ ଛାଡ଼ି ଦେଇଥିଲେ । ସେତେବେଳେ "ଭାରତୀ-ମନ୍ଦିର"ର ଯୁବକମାନଙ୍କ ଅବସ୍ଥା ଭଲଭାବେ ବିଚାର କରି ସୁଅରେ ଭାସିନଯାଇ ପହଁରି ଯିବାପାଇଁ ସେ ପରାମର୍ଶ ଦେଇ-ଥିଲେ । ତାଙ୍କ ପରାମର୍ଶ ଖୁବ୍ କାର୍ଯ୍ୟକାରୀ ହୋଇଥିଲା । କାରଣ 'ଭାରତୀ ମନ୍ଦିର' ଯୁବକମାନେ ଆଉ ପଛେଇ ନାହାନ୍ତି । ତାଙ୍କର ସାନଭାଇ ନବକୃଷ୍ଣ ଚୌଧୁରୀ କଲେଜ ପଢ଼ା ଛାଡ଼ି ଦେଇଥିଲେ । ଯେଉଁ ଶିକ୍ଷିତ ଯୁବକ ଦେଶର ପ୍ରଧାନ କର୍ମୀ ହୋଇପାରନ୍ତେ

ସେମାନେ ଏ ଦିନରେ ସୁଦ୍ଧା ଡେପୁଟି କାମ ପାଇଁ ନିଯୁକ୍ତ ହେଉଥିବା ସ୍ଥଳେ ଗୋପବନ୍ଧୁ ଚୌଧୁରୀଙ୍କର ସରକାରୀ ଚାକିରି ଛାଡ଼ିବା ସେ ସମୟରେ ଏକ ବଡ଼ ଘଟଣା ଥିଲା । ଏହି ଇତିହାସ ଶେଷ ଭାଗରେ ଗୋପବନ୍ଧୁ ଚୌଧୁରୀ ମୁଖ୍ୟ ବ୍ୟକ୍ତି ହେବେ ଏଥିପାଇଁ ତାଙ୍କର ଭଲରକମ ପରିଚୟ ପାଠକେ ଏତିକିବେଳୁ ପାଇବା ସମୀଚୀନ ହେବ । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ, ସ୍ୱର୍ଗତ ରାୟ ବାହାଦୂର ଗୋକୁଳାନନ୍ଦ ଚୌଧୁରୀଙ୍କର ପୁତ୍ର । ଗୋକୁଳାନନ୍ଦ ଚୌଧୁରୀ ଜଣେ ବଡ଼ ଓକିଲ ଥିଲେ । ସାଧାରଣ କାର୍ଯ୍ୟକ୍ଷେତ୍ରରେ ତାଙ୍କର ନାମ ମଧ୍ୟ ଥିଲା । ଗୋପବନ୍ଧୁ ଚୌଧୁରୀ ଏମ୍‌: ଏ: ପାଶ୍ କରିଛନ୍ତି ଓ ପଢ଼ିବା ବେଳେ ଖୁବ୍ ଭଲଛାତ୍ର ଥିଲେ । ତାଙ୍କର ଉଚ୍ଚ ପାରିବାରିକ ସମ୍ବନ୍ଧ ଅଛି । ତାଙ୍କ ସହଧର୍ମିଣୀ ରମାଦେବୀ ମଧୁବାବୁଙ୍କ ଝିଆରୀ । ଏପରି ଜଣେ ଲୋକର ତ୍ୟାଗ ସବୁର ଚାଞ୍ଚଲ୍ୟ ଆଣି ଦେଇଥିଲା ଓ ଓଡ଼ିଶାର ମହାସଭାକୁ ଶିଶୁ ଅବସ୍ଥାରେ ଯଥେଷ୍ଟ ବଳ ଦେଇଥିଲା । ଗୋପବନ୍ଧୁ ଚୌଧୁରୀ ସରକାରୀ ଚାକିରି ଛାଡ଼ି ମହାସଭା କାମ କରିଥିଲେ । ସତ୍ୟବାଦୀର ପଣ୍ଡିତ ନୀଳକଣ୍ଠ ଦାଶ କଲିକତା ବିଶ୍ୱବିଦ୍ୟାଳୟର ଶିକ୍ଷକତା କାର୍ଯ୍ୟରୁ ଇସ୍ତଫା ଦେଇଥିଲେ । ଏହି ମାଲ ମସଲାରେ ଓଡ଼ିଶା ମହାସଭା ଆରମ୍ଭ ହୋଇଥିଲା । ପଣ୍ଡିତ ଗୋପବନ୍ଧୁ ଦାଶଙ୍କୁ ସଭାପତି ଓ ଶ୍ରୀଯୁକ୍ତ ଭଗିରଥୀ ମହାପାତ୍ରଙ୍କୁ ସମ୍ପାଦକ କରି ପ୍ରାଦେଶିକ ମହାସଭା ଗଠିତ ହେଲା । ଉତ୍କଳ ଶିକ୍ଷା ପରିଷଦ ନାମରେ ଗୋଟିଏ ଜାତୀୟ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା । ପଣ୍ଡିତ ଗୋପବନ୍ଧୁ ଏହାର ସଭାପତି ଓ ଶ୍ରୀଯୁକ୍ତ ନନ୍ଦକିଶୋର ଦାସ ଏମ୍. ଏ. ଏହାର ସମ୍ପାଦକ ଥିଲେ ।

ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକ ଗଞ୍ଜାମଜିଲ୍ଲା କାର୍ଯ୍ୟ ପରିଚାଳନା ପାଇଁ ପଠା ହୋଇଥିଲେ । ଶ୍ରୀ ଜଗବନ୍ଧୁ ସିଂହ ପୁରୀଜିଲ୍ଲାର କାର୍ଯ୍ୟଭାର ନେଇ ରହିଲେ । ଶ୍ରୀ ଭାଗିରଥୀ ମହାପାତ୍ର ଓ ଶ୍ରୀ ବ୍ରଜବନ୍ଧୁ ଦାସ କଟକ ଜିଲ୍ଲା କାମର ଭାର ନେଲେ । ଲେଖକଙ୍କୁ ବାଲେଶ୍ୱର ଜିଲ୍ଲାର ଭାର ଦିଆ ହୋଇଥିଲା । ସମ୍ବଲପୁର ଜିଲ୍ଲାର ଭାର ପଣ୍ଡିତ ନୀଳକଣ୍ଠ ଓ ସିଂହଭୂମି ଜିଲ୍ଲାର ଭାର ପଣ୍ଡିତ ଗୋଦାବରୀଶ ମିଶ୍ର ନେଇଥିଲେ ।

ସତ୍ୟବାଦୀ ପ୍ରସିଦ୍ଧ ବିଦ୍ୟାଳୟକୁ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ଅଧିନାୟକତ୍ୱରେ ଜାତୀୟ ବିଦ୍ୟାଳୟ କରି ଦିଆଗଲା । ଚକ୍ରଧରପୁର ହାଇସ୍କୁଲକୁ ଗୋଦାବରୀଶ ବାବୁଙ୍କ ନେତୃତ୍ୱରେ ଜାତୀୟ ବିଦ୍ୟାଳୟ କରି ଦିଆ ହୋଇଥିଲା । ଏହାଛଡ଼ା ସମ୍ବଲପୁରରେ, କଟକ ଜଗତସିଂହପୁରରେ, ବାଲେଶ୍ୱର ଜିଲ୍ଲା ଭଦ୍ରଖରେ, ବାଲେଶ୍ୱରରେ, ବାଲେଶ୍ୱର ଜିଲ୍ଲା ସୋରରେ ଜାତୀୟ ବିଦ୍ୟାଳୟମାନ ପ୍ରତିଷ୍ଠିତ ହୋଇଥିଲା । ୧୯୨୧ ସାଲ ମାର୍ଚ୍ଚ ମାସ ଶେଷ ଆଡ଼କୁ ମହାତ୍ମାଗାନ୍ଧି ଓଡ଼ିଶା ଭ୍ରମଣରେ ଆସିଥିଲେ । ସେ ଭଦ୍ରଖ, କଟକ, ପୁରୀ, ସତ୍ୟବାଦୀ ଓ ଗଞ୍ଜାମର ବ୍ରହ୍ମପୁରକୁ ଯାଇଥିଲେ । ପ୍ରତ୍ୟେକ ସ୍ଥାନରେ ସହସ୍ର ସହସ୍ର ଲୋକ ତାଙ୍କର ଦର୍ଶନପାଇଁ ଅସିଥିଲେ ଓ ତାଙ୍କ କଥା ଶୁଣିଥିଲେ । ଲୋକେ ସୁନ୍ଦର ଶବ୍ଦ 'ସ୍ୱରାଜ୍ୟ' ତାଙ୍କ ମୁହଁରୁ ଶୁଣିଥିଲେ ଓ ସେମାନଙ୍କ ନିରାଶାନ୍ଧକାର ହୃଦୟରେ ରେଖାଏ ଆଶାର କିରଣ ଝଲସି ଉଠିଥିଲା । ମହାତ୍ମା ଯେ 'ସୟତାନ ସରକାର' ଶବ୍ଦ ଜୋରଦେଇ ବାରମ୍ବାର କହିଲେ ସେଥିରେ ଲୋକଙ୍କ ମନରୁ ଭୟ ଦୂରୀଭୂତ ହୋଇଯାଇଥିଲା । ଯେ ଅହିଂସାର ମନ୍ତ୍ର ସେ ପ୍ରଚାର କଲେ

ସେଥିରେ ଲୋକେ ନଜର ଅଜ୍ଞାତ ଶକ୍ତିକୁ ଜାଣିପାରିଲେ । ସେ ଶକ୍ତି ହେଉଛି ନିର୍ଯ୍ୟାତିତାର ଅବାଧ କ୍ଷମତା । କେତେଟା ମାସ ପୂର୍ବରୁ ଯେଉଁ ଲୋକେ ଅଳସୁଆ, ନିର୍ଜୀବ, ଉପ୍ପାଳ୍ପୁ ବୋଲି ଜଣାଯାଉଥିଲେ, ସେମାନେ ଏତେ କର୍ମଠ ଓ ଚେଷ୍ଟାଶୀଳ ହୋଇ ଉଠିଲେ ଯେ ତା' ପୂର୍ବରୁ ସ୍ୱପ୍ନରେ ସୁଦ୍ଧା ଭାବ ହେଉ ନ ଥିଲା । ମହାତ୍ମାଜୀ ଓଡ଼ିଶାରେ ପ୍ରାୟ ଏକ ସପ୍ତାହ ରହିଥିଲେ । ଦେଶବ୍ୟାପୀ ଗୃହଜାଗ୍ରତି ଆଣି ଦେବାପାଇଁ ଏତିକ ଯଥେଷ୍ଟ ହୋଇଗଲା । ମହାତ୍ମାଜୀ ଓଡ଼ିଶାରୁ ମାନ୍ଦ୍ରାଜ ଗଲେ । ଓଡ଼ିଶା ଅତି ଗରିବ ଦେଶ ବୋଲି ତାଙ୍କର ଧାରଣା ହେଲା । ଓଡ଼ିଶାର ଦାରିଦ୍ର୍ୟ ଭୂତ ଗୃପିଲା ପରି ତାଙ୍କୁ ଗ୍ରାସ କରିଥିଲା । ଓଡ଼ିଶା ତାଙ୍କ ଆଖିରୁ ଲୁହ ଝରାଇ ଦେଇଥିଲା । ସେ ଦୀର୍ଘନିଃଶ୍ୱାସ ପକାଇ କହିଥିଲେ ଯେ, "ଯଦି ସେ ପାରନ୍ତେ ତେବେ ଏତେ ଓଡ଼ିଆଙ୍କ ସଙ୍ଗରେ ଉପାସେ ମରି ଆନନ୍ଦ ପାଆନ୍ତେ" । ଓଡ଼ିଶାରେ ଯେ 'ଜୀଅନ୍ତା ମୂର୍ଦାର'ର ଦୃଶ୍ୟ ସେ ଦେଖି ଥିଲେ, ସେଥିରେ ଓଡ଼ିଶାପାଇଁ ତାଙ୍କ ହୃଦୟରେ ଗୋଟିଏ କୋମଳ ପ୍ରକୋଷ୍ଠ ହୋଇଗଲା । ତାଙ୍କର ଆଶୀର୍ବାଦ ଅର୍ଦ୍ଧମୃତ ଓଡ଼ିଆ ଶିରାରେ ଜୀବନ ଆଣି ଦେଲା । ସେ ଜୀବନର ଚିହ୍ନ ବହୁଭାବେ ପରିଲକ୍ଷିତ ହେଲା ।

ସରକାରୀ ଆଇନ, ଅଦାଲତ ବର୍ଜନ ଜୋରସୋରରେ ଚାଲିଲା । ବାଲେଶ୍ୱର ଜିଲା ଭଦ୍ରଖରେ ଏ କାର୍ଯ୍ୟ ଏପରି ସଫଳ ହୋଇଥିଲା ଯେ, ସେ ସବ୍‌ଡ଼ିଭିଜନର କୌଣସି ଜମିଦାର ପ୍ରଜାଙ୍କ ବିରୋଧରେ ଖଜଣା ବାକି ନାଲିସ୍ କରି ନ ଥିଲେ । ଫଳରେ ସେକେଣ୍ଡ ଅଫିସରଙ୍କ କଚେରୀ ପ୍ରାୟ ବର୍ଷକ ପର୍ଯ୍ୟନ୍ତ

କାର୍ଯ୍ୟତଃ ବନ୍ଦ ଥିଲା । ଶ୍ରୀ ବାଞ୍ଛାନିଧି ମହାନ୍ତି ଭଦ୍ରଖ କାର୍ଯ୍ୟର ଭାରରେ ଥିଲେ । ଶତ ଶତ ଗ୍ରାମରେ ପଞ୍ଚାଏତ କାଏମ ହୋଇଗଲା । ବାଲେଶ୍ୱରଠାରୁ ପ୍ରାୟ ୧୪ ମାଇଲ ଦୂର ଶ୍ରୀଜଙ୍ଗ ଗ୍ରାମ ପଞ୍ଚାୟତରେ ଜମି ଝରଦ୍‌ବନ୍ଦି ରେଜେଷ୍ଟ୍ରି ମଧ୍ୟ ହୋଇଥିଲା । ଏ ରେଜେଷ୍ଟ୍ରିକୁ ପକ୍ଷମାନେ ବରାବର ପାଳନ କରିଛନ୍ତି । ବସ୍ତା ଥାନାର ସମସ୍ତ ଚୌକିଦାରୀ ପଞ୍ଚାୟତର ପ୍ରେସିଡ଼େଣ୍ଟମାନେ ଇସ୍ତଫା ଦେଇ ଦେବାରୁ ଜଣେ ଡେପୁଟି ମାଜିଷ୍ଟ୍ରେଟ ଚୌକିଦାରି ଟିକସ ଆଦାୟ କରିଥିଲେ । ସ୍ୱର୍ଗତ ସୁବୋଧଚନ୍ଦ୍ର ଦେଓ, ନୀଳାମ୍ବର ଦାସ ବସ୍ତାର ମହାସଭାକାର୍ଯ୍ୟ ଚଳାଇଥିଲେ । ମହାସଭାର ଶାଖା କାର୍ଯ୍ୟାଳୟ ସଙ୍ଗରେ ନାନା ସ୍ଥାନରେ ଆଶ୍ରମମାନ ଖୋଲା ହେଲା । ଏହି ଆଶ୍ରମରେ କର୍ମୀମାନେ ରହି ଶିକ୍ଷା ପାଉଥିଲେ । ଅଧିକାଂଶ କର୍ମୀ ଘର ସହିତ ସମ୍ପର୍କ ଛାଡ଼ି ପୂର୍ଣ୍ଣମାତ୍ରାରେ ଆନ୍ଦୋଳନରେ ଯୋଗ ଦେଇ ଏହି ଆଶ୍ରମ-ମାନଙ୍କରେ ରହିଲେ । ପ୍ରଧାନତଃ ୭ଟି ଆଶ୍ରମ ଓଡ଼ିଶାରେ ହୋଇଥିଲା । ବାଲେଶ୍ୱର, ଭଦ୍ରଖ, ସୋର, କଟକ, ଜଗତ୍‌ସିଂହପୁର, ପୁରୀ ଓ ସାକ୍ଷୀଗୋପାଳ । ଏହାଛଡ଼ା ପ୍ରତ୍ୟେକ ସ୍ଥାନରେ ଗୋଟିଏ ଲେଖାଏଁ ଆଶ୍ରମ ହୋଇଥିଲା । କିନ୍ତୁ ଏ ସବୁ ଆଶ୍ରମ ଉପରୋକ୍ତ ୭ଟି ଆଶ୍ରମ ତୁଳନାରେ ଶ୍ରେଷ୍ଠ ଥିଲା । ଏହି ଆଶ୍ରମମାନଙ୍କ ମଧ୍ୟରୁ ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ସହିତ ସଂଲଗ୍ନ ପଣ୍ଡିତ ଗୋପବନ୍ଧୁଙ୍କ ତତ୍ତ୍ୱାବଧାନରେ ପରିଚାଳିତ ସାକ୍ଷୀଗୋପାଳ ଓ ଜଗତ୍‌ସିଂହପୁର ଅଳକାଶ୍ରମ ଏହି ଦୁଇଟି ଆଦର୍ଶ ଅନୁଷ୍ଠାନ ହୋଇ ଆସୁଥିଲା । ଓଡ଼ିଶାର ନାନାସ୍ଥାନରୁ ଏ ଆଶ୍ରମ ଦୁଇଟିକୁ ଶିକ୍ଷାର୍ଥୀ ଯାଉଥିଲେ । ଗ୍ରାମର ଲୋକ ସେମାନଙ୍କ

ଜାଗରଣର ସୁଫଳ ପରିଷ୍କାର ଭାବରେ ବୃଦ୍ଧି ପାଉଥିଲେ । ପୋଲିସ ସବ୍‌ଇନ୍‌ସପେକ୍ଟର ତ ଦୂରର କଥା ଚୌକିଦାର ଲାଲ ଆଖିରେ ଲୋକେ ଥରହର ହୋଇ ଯାଉଥିଲେ ଓ କିଛି ହେଲେ କାରଣ ଦର୍ଶାଇ ସେମାନଙ୍କଠାରୁ ଜରିମାନା ମଧ୍ୟ ନିଆ ହେଉଥିଲା । ପୋଲିସ ଚାକିରିର ଏହା ନାଯ୍ୟ ଉପୁରି ଆୟ ବୋଲି ଧରା ହେଉଥିଲା । ଯେତେବେଳେ କୌଣସି ପୋଲିସ କର୍ମଚାରୀ ତଦନ୍ତରେ ଗାଁକୁ ଯାଉଥିଲେ ଗାଁର ସମସ୍ତ ବଡ଼ରୁ ଶ୍ରେଷ୍ଠ ପର୍ଯ୍ୟନ୍ତ ହାକିମଙ୍କ ଚର୍ଚ୍ଚାରେ ଲାଗି ଯାଉଥିଲେ । କାଳେ ସେ କିଛି ଅନିଷ୍ଟ କରିଦେବେ ଏହି ଭୟରେ । କିନ୍ତୁ ବର୍ତ୍ତମାନ ଚକା ଘୂରିଲା । ଗ୍ରାମବାସୀଙ୍କ ଜାଗରଣ ହିଁ ପୋଲିସ କର୍ମଚାରୀମାନଙ୍କୁ ନମ୍ର କରିଦେଲା । କେହି ତାଙ୍କୁ ଖାତିର କଲେ ନାହିଁ । ଯେତେବେଳେ ପ୍ରତିକ୍ରିୟା ଆରମ୍ଭ ହେଲା, ପୋଲିସ କର୍ମଚାରୀମାନେ ସମ୍ମାନ ନ ପାଇ ଅସମ୍ମାନ ଓ ସ୍ଥାନେ ସ୍ଥାନେ ବିରକ୍ତିଜନକ ତିରସ୍କାର ମଧ୍ୟ ପାଇଲେ ।

୧୯୨୧ ସାଲ ଜୁନ ତା ୩୦ ରିଖ ପର୍ଯ୍ୟନ୍ତ ମହାସଭାର କାର୍ଯ୍ୟକ୍ରମ ଥିଲା, ସଭ୍ୟ ସଂଗ୍ରହ ଓ ପାଣ୍ଠି ସଂଗ୍ରହ । ଭାରତର ବରେଣ୍ୟ ସ୍ୱର୍ଗତଃ ନେତା ଲୋକମାନ୍ୟ ତିଳକଙ୍କ ନାମରେ ମହାସଭାର ପାଣ୍ଠିକୁ 'ତିଳକ ପାଣ୍ଠି' ନାମକରଣ ଦିଆ ଯାଇଥିଲା । ଓଡ଼ିଶାରେ ପଚିଶ ହଜାର ସଭ୍ୟ ୩୦ ହଜାର ପାଣ୍ଠି ସଂଗ୍ରହ କରିବାର ଧାର୍ଯ୍ୟ ହୋଇଥିଲା । ନିର୍ଦ୍ଦିଷ୍ଟ ସମୟରେ ଓଡ଼ିଶାରେ ୨୦ ହଜାର ମହାସଭାର ସଭ୍ୟ ସତର ହଜାର 'ତିଳକ ପାଣ୍ଠି' ହୋଇଥିଲା । ଧାର୍ଯ୍ୟ ହୋଇଥିବା କାମ ନ ହୋଇ ପାରିବାର ଯଥେଷ୍ଟ କାରଣ ଥିଲା । କୌଣସି ବିସ୍ତୀର୍ଣ୍ଣ କାର୍ଯ୍ୟ ପରିଚାଳନା କରିବାର ଅଭିଜ୍ଞତା ଥିବା କର୍ମୀ କେହି ନଥିଲେ । ଯେତିକ କର୍ମୀ ସମସ୍ତେ ଯୁବ ଓ ନବଯୁବକ ଥିଲେ । ଏହା ଛଡ଼ା ଜନତା

ମଧ୍ୟରେ ଅଜ୍ଞତା ଓ ରାଜନୈତିକ କାର୍ଯ୍ୟ ପ୍ରତି ଅବହେଳା ବହୁ ପରିମାଣରେ ଥିଲା । ମୁଷ୍ଟିମେୟ ଅନଭିଜ୍ଞ କର୍ମୀ ଯେତେ ଉତ୍ସାହୀ ଓ ଶକ୍ତିମାନ ହେଉନ୍ତୁ ପଛକେ ସେ ଅନ୍ଧକାର ଭିତରେ ପଶି ବାଟ କାଟି ପାରୁନଥିଲେ । ତତ୍କାଳୀନ ଅବସ୍ଥା ବିବେଚନା କଲେ ନିଶ୍ଚୟ କୁହାଯିବ ଯେ ଯାହା ହୋଇଥିଲା ଖୁବ୍ ଭଲ ଓ ଆଶାତୀତ ହୋଇଥିଲା । ଗୋଟିଏ ଦୁଇଟି ପ୍ରଦେଶ ଛାଡ଼ିଦେଲେ ଅନ୍ୟ କୌଣସି ପ୍ରଦେଶ ମଧ୍ୟ ମହାସଭାର ଧାର୍ଯ୍ୟ କାମ କରିପାରି ନଥିଲେ । ଅନୁପାତରେ ଓଡ଼ିଶା କିଛି କମ୍ କରିନଥିଲା । ଏ କାର୍ଯ୍ୟକ୍ରମ ପରେ ମହାସଭା ବିଦେଶୀ ବସ୍ତ୍ର ବର୍ଜନ କାର୍ଯ୍ୟକ୍ରମ କଲେ । ଅନ୍ୟ ପ୍ରଦେଶରେ ଯେପରି ଉତ୍ସାହର ସହିତ ଏ କାର୍ଯ୍ୟକ୍ରମ ପାଳିତ ହୋଇଥିଲା, ଓଡ଼ିଶାରେ ମଧ୍ୟ ସେହିପରି ହୋଇଥିଲା । ବିଦେଶୀ ଲୁଗା ଦୋକାନ ଆଗରେ ଧାରଣା ଦେବା ଓ ଅରଟ ପ୍ରଚୁର କାର୍ଯ୍ୟ ଦ୍ରୁତ ଗତିରେ ଚାଲିଲା । ଏହାର ଫଳ ଖୁବ୍ ଭଲ ହୋଇଥିଲା । କଟକ ଓ ବାଲେଶ୍ୱରରେ ବିଦେଶୀ ଲୁଗା ବର୍ଜନ ବହୁ ପରିମାଣରେ ସାଧିତ ହୋଇଥିଲା । ବାଲେଶ୍ୱରକୁ ବର୍ଷକୁ ଉପର ପର୍ଯ୍ୟନ୍ତ ବିଦେଶୀ ଲୁଗା ଆଦୌ ଆସି ନଥିଲା । ଏହି କାମରେ ବାଲେଶ୍ୱରରେ ପ୍ରାୟ ୫୦ ଜଣ କର୍ମୀ ଜେଲ୍ ଯାଇଥିଲେ । ସୁବୋଧଚନ୍ଦ୍ର ଦେ ଓ ବିଶ୍ୱନାଥ ହୋତା ଦୁଇଜଣ ଅସହଯୋଗୀ ଛାତ୍ର ଏ କାର୍ଯ୍ୟରେ ଖୁବ୍ କଷ୍ଟ ଭୋଗ କରିଥିଲେ । ଦୁର୍ଭାଗ୍ୟବଶତଃ ଦୁଇଜଣ ନବଯୁବକ ଆଉ ଏ ଜଗତରେ ନାହାନ୍ତି । ବିଦେଶୀ ଲୁଗା ବନ୍ଦ କରିବାରେ ଯୁବକଙ୍କ ଉତ୍ସାହ ବର୍ଣ୍ଣନାତୀତ । କୁଲି ଓ ଗାଡ଼ିବାଲଙ୍କୁ ବିଦେଶୀ ଲୁଗାଗଣ୍ଠି ସ୍ପର୍ଶ କରିବାକୁ କେବଳ ପ୍ରବର୍ତ୍ତାଇ ସେମାନେ ନିବର୍ତ୍ତି ନଥିଲେ । ସମୟ ସମୟରେ ବିଦେଶୀ ଲୁଗା ଗଣ୍ଠି ନେଇ ଯାଉଥିବା ଚଳନ୍ତି ଗାଡ଼ି ଆଗରେ ସେମାନେ ଶୋଇ

ଯାଉଥିଲେ । ଏହିପରି ଗୋଟିଏ ଘଟଣାରେ ରାସ୍ତା ଅବରୋଧ ଅପରାଧରେ ଲେଖକ ଓ ଅନ୍ୟ ପାଞ୍ଚଜଣଙ୍କୁ ୧୫ ଦିନ କରି ଜେଲ୍ ହୋଇଥିଲା । ବିଦେଶୀ ଲୁଗା ବେପାରୀଙ୍କୁ ସମାଜ ବାସନ୍ଦ ଖୁବ୍ ଜୋରରେ ଚାଲିଲା । ବାଲେଶ୍ୱର ଜିଲ୍ଲା ଜଳେଶ୍ୱରରେ ଜଣେ ମାରୁଆଡ଼ି ବିଦେଶୀ ଲୁଗା ବ୍ୟବସାୟୀଙ୍କୁ ଲୋକେ ଏପରି ବାସନ୍ଦ କରିଥିଲେ ଯେ, ତାଙ୍କର ଧାନକଳ କୁଲିମାନେ ଧର୍ମଘଟ କରିଥିଲେ । ଧୋବା, ଭଣ୍ଡାରି ତାଙ୍କୁ ଓ ତାଙ୍କ ପରିବାରକୁ ଖଟି ନଥିଲେ । ଏପରିକି ତାଙ୍କ ଶିଶୁ ପାଇଁ ଦୁଧ ସୁଦ୍ଧା ପାଇନଥିଲେ । ଘଟଣା ଏପରି ଗୁରୁତର ହେଲା ଯେ ମହାସଭାର କର୍ମୀମାନେ ଏ ସମାଜ ବାସନ୍ଦରେ ବାଧା ଦେଲେ । ଲୁଗା ବ୍ୟବସାୟୀଙ୍କୁ ଶକ୍ତ କରି ଜରିମାନା ହୋଇଥିଲା । ସେ ସମସ୍ତ ବିଦେଶୀ ଲୁଗା କଲିକତା ଫେରାଇ ଦେଲେ ଓ ବର୍ଷେକ ପର୍ଯ୍ୟନ୍ତ ଆଉ ଲୁଗା ନ ଆଣିବା ପାଇଁ ଚୁକ୍ତି ଲେଖିଦେଲେ । ଜଳେଶ୍ୱରରେ ମହାସଭା କାର୍ଯ୍ୟର ଭାରରେ ଶ୍ରୀଯୁକ୍ତ କରୁଣାକର ପାଣିଗ୍ରାହୀ ଥିଲେ । ଏଠାରେ ଏହା ଉଲ୍ଲେଖଯୋଗ୍ୟ ଯେ କଲିକତାର ଓଡ଼ିଆ ଶ୍ରମଜୀବୀମାନେ ବିଦେଶୀ ଲୁଗା ଗାଣ୍ଠି ସ୍ପର୍ଶ ନ କରିବାକୁ ଦୃଢ଼ପ୍ରତିଜ୍ଞ ହୋଇ ଖ୍ୟାତି ଅର୍ଜନ କରିଥିଲେ । ପଣ୍ଡିତ ଗୋପବନ୍ଧୁ କଲିକତାରେ ଏହା ସଙ୍ଗଠନ କରାଇଥିଲେ । ବଡ଼ ବଜାରର ସୂତାପଟିର ପ୍ରାୟ ସମସ୍ତ ଶ୍ରମଜୀବୀ ଓଡ଼ିଆ ଥିବାରୁ ସେଠା ଲୁଗା ବ୍ୟବସାୟୀମାନେ ବାଧ୍ୟ ହୋଇ ଡିସେମ୍ବର ୩୧ ତାରିଖ ପର୍ଯ୍ୟନ୍ତ ଆଉ ବିଦେଶୀ ଲୁଗା କାରବାର ନ କରିବାକୁ ଚୁକ୍ତି କରିଥିଲେ । ଅନେକ ଆଶ୍ରମରେ ସୂତାକଟା ଓ ଲୁଗାବୁଣା ଶିକ୍ଷା ଦିଆହେଲା । ଗାଁରେ ସୂତାକଟା କେନ୍ଦ୍ରମାନ କରାହେଲା । ସତ୍ୟ କହିବାକୁ ହେଲେ ବିଦେଶୀ ଲୁଗା ଦୋକାନରେ ଧାରଣା

ଦେବା ଓ ଅନ୍ୟ ଉତ୍ତେଜନାମୟ କାର୍ଯ୍ୟରେ ଯେପରି ଉତ୍ସାହ ଥିଲା ଏ ସୂତାକଟା କାର୍ଯ୍ୟରେ ସେପରି ନଥିଲା । ସତ୍ୟାଗ୍ରହ-ଯୁଦ୍ଧରେ ଅରଟ ଯେ କି ପାଲା ଗାଇବା ପାଇଁ ଉଦ୍ଦିଷ୍ଟ ଏକଥା କର୍ମୀମାନେ ବୁଝି ନଥିଲେ ତେଣୁ ଏହାକୁ ଏକ ଗୌଣ କାମ ବୋଲି ସମସ୍ତେ ମନେ କରୁଥିଲେ ।

ବର୍ଷକ ମଧ୍ୟରେ ସ୍ୱରାଜ୍ୟ ପାଇବାକୁ ହେଲେ କି କି ସର୍ତ୍ତ ପାଳନ କରିବାକୁ ହେବ, ସେ ସର୍ତ୍ତ ସବୁକୁ କର୍ମୀମାନେ ବେଶୀ ନଜର ଦେଉ ନଥିଲେ । ସମସ୍ତେ ସରକାରଙ୍କ ସହିତ ଲଢ଼ିବାକୁ ତତ୍ପର ଥିଲେ । ମହାସଭାର ନିର୍ଦ୍ଦେଶ ଅନୁସାରେ ସବୁ ପ୍ରଦେଶରେ ଉତ୍କଳରେ ମଧ୍ୟ ସବିନୟ ଆଇନ ଅମାନ୍ୟର ଯୋଗାଡ଼ ଚାଲିଥିଲା ସତ, କିନ୍ତୁ କର୍ମୀମାନେ ଅହିଂସା ଯୁଦ୍ଧର ନିୟମମାନ ଜାଣି ନଥିଲେ । ଆଇନ ଅମାନ୍ୟ ପାଇଁ ତତ୍ପର ହେବାକୁ ହେଲେ ଯେ ସର୍ତ୍ତମାନ ପାଳନ କରିବାପାଇଁ ମହାତ୍ମାଙ୍କ ଇଙ୍ଗିତରେ ମହାସଭା ଜୋର୍ ଦେଇ କହୁଥିଲେ, ସେ କଥା ପ୍ରତି ନଜର ନଦେଇ ସମସ୍ତେ ଉତ୍ସାହର ସୁଅରେ ଭାସି ଯାଉଥିଲେ । ତଥାପି ନିକଟ ଭବିଷ୍ୟତରେ ସତ୍ୟାଗ୍ରହ ହେବାର ସ୍ୱପ୍ନ କର୍ମୀମାନେ ଦେଖିବାରେ ଲାଗିଲେ । ଦେଶ ସାରା ସ୍ୱୟଂସେବକ ସଂଗଠନ ସବୁ ବେଆଇନ ଘୋଷିତ ହୋଇଗଲା । ସରକାରଙ୍କର ଏ ଘୋଷଣାର ଅର୍ଥ 'ଅହିଂସାପୂର୍ଣ୍ଣ ହେଲେ ମଧ୍ୟ ରାଜନୈତିକ ଉଦ୍ଦେଶ୍ୟରେ କୌଣସି ଦଳଗତ ଉଦ୍ୟମ ହୋଇପାରିବ ନାହିଁ ।' ଦେଶବନ୍ଧୁ ଦାସ ନିଜର ବୁଦ୍ଧି ଥିବା ସତ୍ୟାଗ୍ରହ ମାତ୍ର ଅନୁସାରେ ସରକାରଙ୍କର ଏହି ଆଇନ ଘୋଷଣା ବିରୋଧରେ ଘୋର ଆଇନ ଅମାନ୍ୟ ଚଳାଇଥିଲେ । ଶତ ଶତ ସ୍ୱୟଂସେବକ ବିଦେଶୀ

ଲୁଗା ପିନ୍ଧି ମଧ୍ୟ ଆଇନ ଅମାନ୍ୟ କରି ବଙ୍ଗ କାରାଗାର ପୂର୍ଣ୍ଣ କରିଦେଲେ । ସ୍ୱର୍ଗତ ନେତାଙ୍କ ପ୍ରତି ଯଥେଷ୍ଟ ସମ୍ମାନ ରଖି ଏହା କୁହାଯିବ ଯେ, ମହାତ୍ମାଗାନ୍ଧି ଓ ମହାସଭା ଆଇନ ଅମାନ୍ୟ ପୂର୍ବରୁ ଯେଉଁ ସବୁ ସର୍ତ୍ତ ପାଳନ କରିବାକୁ କହୁଥିଲେ ସେ ସର୍ତ୍ତସବୁକୁ ସେ ମଧ୍ୟ ବିଶେଷ ଭାବରେ ଧ୍ୟାନ ଦେଇ ନଥିଲେ । ଯାହାହେଉ ୧୯୨୧ ସାଲ ଡିସେମ୍ବର ମାସରେ ଅହମଦାବାଦରେ ମହାସଭାର ବୈଠକରେ କିଛିଦିନ ପୂର୍ବରୁ ମହାସଭାର ନିର୍ବାଚିତ ସଭାପତି ଝୁବ୍ ବିଶାଳ ଆକାରରେ ଆଇନ ଅମାନ୍ୟ ଚଳାଇ କାରାରୁଦ୍ଧ ହେଲେ । ତାଙ୍କର କାରାବରୋଧ ପରେ ମଧ୍ୟ ଆଇନ ଅମାନ୍ୟ ସେହିପରି ଚାଲିଲା । କଲିକତା ଓଡ଼ିଶାକୁ ନିକଟ ଆଉ ମଧ୍ୟ ଓଡ଼ିଶା ସହିତ ବଙ୍ଗଦେଶର ସଂସ୍କାରଗତ ସାମଞ୍ଜସ୍ୟ ଅଛି, ତେଣୁ କଲିକତା ଘଟଣାର ଘାତ ପ୍ରତିଘାତ ଓଡ଼ିଶାରେ ଖୁବ୍ ଜୋରରେ ହୋଇଥିଲା । ବିଶାଳ ଅଗ୍ନିକାଣ୍ଡ ଘଟାଇବା ପାଇଁ ଗୋଟିଏ ବାରୁଦ ପାହାଡ଼ ଯେପରି କ୍ଷୁଦ୍ର ଅଗ୍ନିକଣାକୁ ଅପେକ୍ଷା କରିଥାଏ, ଓଡ଼ିଶାର ଅବସ୍ଥା ସେତେବେଳେ ସେହିପରି ଥିଲା କିନ୍ତୁ ବାୟୁମଣ୍ଡଳ ଅହିଂସା ପୂର୍ଣ୍ଣଥିଲା ।

ନିଖିଳ ମହାସଭାର ପରାମର୍ଶରେ ପ୍ରାଦେଶିକ ମହାସଭା ଆଇନ ଅମାନ୍ୟ ପାଇଁ ଯେଉଁସବୁ ସ୍ଥାନ ଠିକ୍ କରିଥିଲେ, ସେହି ସ୍ଥାନ ମାନଙ୍କରେ ଅହିଂସା ଯୁଦ୍ଧ ଲଗାଇବା ପାଇଁ କର୍ମୀମାନେ ମହାତ୍ମାଗାନ୍ଧି ଓ ନିଖିଳ ଭାରତ ମହାସଭାର ସଂକେତକୁ ବ୍ୟଗ୍ର ଭାବରେ ଚାହିଁ ରହିଲେ । ବର୍ତ୍ତମାନ ଜଣା ପଡ଼ୁଛି ଯେ ସେତେବେଳେ କର୍ମୀମାନଙ୍କର ସତ୍ୟାଗ୍ରହ ସମ୍ବନ୍ଧରେ ସ୍ପଷ୍ଟ ଧାରଣା

ନଥିଲା । ନିଖିଳ ଭାରତ ମହାସଭା ପ୍ରାଦେଶିକ ମହାସଭାକୁ ସତ୍ୟାଗ୍ରହ ସମ୍ବନ୍ଧରେ ଲମ୍ବା ଡୋରି ଦେଇ ଦେଇଥିଲେ ଘଟଣା ଯେ କଅଣ ହୋଇଥାନ୍ତା ଭଗବାନ ଜାଣନ୍ତି । ସୌଭାଗ୍ୟବଶତଃ ଉପରେ ମହାତ୍ମାଜୀଙ୍କ ଭଳି ଜଣେ ନେତା ଥିଲେ, ତାଙ୍କର ଦୃଷ୍ଟି ଯେପରି ପରିଷ୍କାର ମନ ସେହିପରି ଅଟଳଥିଲା । ଭାରତ ପରି ଏକ ବିଶାଳ ଦେଶର ସବୁ ଅଂଶରେ ଯେ ରାଜନୈତିକ ଭୂମିକମ୍ପ ଚାଲିଥାଏ ସେଥିରେ ସେ ଅସ୍ଥିର ହୋଇ ପଡ଼ି ନଥିଲେ । ମହାତ୍ମାଜୀ ବାରମ୍ବାର ସାବଧାନ କରାଉଥିଲେ କିନ୍ତୁ ତାଙ୍କର ସେପରି ବିଶାଳ ବ୍ୟକ୍ତିତ୍ୱ ପ୍ରତି କର୍ମୀମାନଙ୍କ ହୃଦୟର ଶ୍ରଦ୍ଧା ନ ଥିଲେ ତାଙ୍କ ସତର୍କବାଣୀ ବୋଧହୁଏ କେହି ଶୁଣି ନଥାନ୍ତେ । ସ୍ୱରାଜ୍ୟ ମିଳିବା ଦିନ ୧୯୨୧ ସାଲ ଡିସେମ୍ବର ୩୧ ତାରିଖ ଶୀଘ୍ର ଚାଲି ଆସିଲା । ପୂଜ୍ୟ ନେତାଙ୍କ ପୀଠସ୍ଥଳ ଅହମଦାବାଦରେ ମହାସଭାର ବୈଠକ ବସିଲା । ଦେଶବ୍ୟାପୀ ଉତ୍ସାହର ତରଙ୍ଗ ଖେଳୁଥାଏ । ଅହମଦାବାଦ ଦେଶର ଠିକ୍ ସେପାଖରେ ହେଲେ ମଧ୍ୟ ଓଡ଼ିଶାରୁ ପ୍ରାୟ ୧୨୫ଜଣ ପ୍ରତିନିଧି ଓ କେତେ ଦର୍ଶକ ଯାଇଥିଲେ । ପ୍ରତ୍ୟେକଙ୍କୁ ପ୍ରାୟ ୫୦ଟଙ୍କା କରି ଖର୍ଚ୍ଚ କରିବାକୁ ପଡ଼ିଥିଲା । ଯେଉଁମାନେ ଯାଇଥିଲେ ସେମାନେ ସମସ୍ତେ ଧନୀ ନଥିଲେ । ଅନେକ ନିଜ ନିଜର ପାଥେୟ ଭିକ୍ଷାକରି ନେଇ ଯାଇଥିଲେ । ଏହି ପ୍ରଥମ ଥର ନିୟମିତ ଭାବରେ ଓଡ଼ିଶାରୁ ପ୍ରତିନିଧି ମହାସଭାରେ ଯୋଗ ଦେବା ପାଇଁ ଗଲେ । ଏଇଥିରୁ ଜଣାପଡ଼ିବ ରାଜନୀତିରେ ପଛୁଆଥିବା ଓଡ଼ିଶା ଗାନ୍ଧିଙ୍କ ଅହିଂସା ଆନ୍ଦୋଳନରେ କିପରି ଆଲୋକିତ ହୋଇଥିଲା ।

ଏ ପର୍ଯ୍ୟନ୍ତ ଓଡ଼ିଶା ତା'ର ଜାଗରଣ ନିମିତ୍ତ କିଛି ନିର୍ଯ୍ୟାତନା ସହ୍ୟ କରି ନାହିଁ । ବାଲେଶ୍ୱରରେ କେତେଜଣ ଅଳ୍ପଦିନ ପାଇଁ କାରାଦଣ୍ଡ ଭୋଗିଥିଲେ । କଟକରେ ଅସହଯୋଗୀ ମେଡିକେଲ ଛାତ୍ର ରାଜକୃଷ୍ଣ ବୋଷ ୧୦୮ ଦଫାରେ ଜାମିନ ନଦେଇ ଏକବର୍ଷ କାରାବରଣ କରିଥିଲେ । ପଣ୍ଡିତ ଗୋପବନ୍ଧୁଙ୍କୁ ପୁରୀ ଜିଲ୍ଲା ଖୋର୍ଦ୍ଧାରେ ଜେଲ୍ ଦେବାପାଇଁ ଉଦ୍ୟମ ହୋଇଥିଲା । ସେତେବେଳକାର ଏକମାତ୍ର ଜାତୀୟ ସମ୍ବାଦପତ୍ର 'ସମାଜ'ର ସମ୍ପାଦକ ଗୋପବନ୍ଧୁ ବାବୁ ଥିଲେ । କେତେକ ପୋଲିସ କର୍ମଚାରୀଙ୍କ ଆଚରଣର ସମାଲୋଚନା 'ସମାଜ'ରେ ପ୍ରକାଶ ପାଉଥିବା ହେତୁ, ଗୋପବନ୍ଧୁ ବାବୁଙ୍କ ନାମରେ ମାନହାନି ଅପରାଧରେ ଫୌଜଦାରୀ ମୋକଦ୍ଦମା ହୋଇଥିଲା । ସେ କଚେରୀରେ ଆତ୍ମପକ୍ଷ ସମର୍ଥନ କରିନଥିଲେ । ବିଚାରକ ଡେପୁଟି ମାଜିଷ୍ଟ୍ରେଟ ସୁଭାଷଚନ୍ଦ୍ର ବୋଷଙ୍କ ଭାଇ ସୁରେଶଚନ୍ଦ୍ର ବୋଷ ଥିଲେ । ସେ ଗୋପବନ୍ଧୁ ବାବୁଙ୍କୁ ନିର୍ଦ୍ଦୋଷ ସାବ୍ୟସ୍ତ କରି ଖଲାସ କରିଦେଲେ ଓ ନିଜେ ଇସ୍ତଫା ଦେଇଦେଲେ । ଏହି ଖଲାସ ଆଦେଶ ବିରୋଧରେ ସରକାର ହାଇକୋର୍ଟରେ ଅପିଲ କରିଥିଲେ ମାତ୍ର ଫଳ କିଛି ହେଲାନାହିଁ ।

ଏହିପରି ଓଡ଼ିଶା ଜାତୀୟ ଜାଗରଣର ପ୍ରଥମ ବର୍ଷ କଟିଲା ମାତ୍ର ତଦନୁଯାୟୀ ନିର୍ଯ୍ୟାତନା କିଛି ଭୋଗ କରିବାକୁ ପଡ଼ିଲା ନାହିଁ । ଯାହେଉ ୧୯୨୨ ସାଲକୁ ସେ ବାକି ରହିଲା ।

ଅସହଯୋଗ ଆନ୍ଦୋଳନ ପ୍ରତି ଇଂରେଜ ସରକାରଙ୍କର ମତ ପ୍ରଥମେ ଥିଲା "ଦେଖ କଅଣ ହେଉଛି ।" ସେତେବେଳକାର ବଡ଼ଲାଟ ଲର୍ଡ଼ ଚେମସ୍ ଫୋର୍ଡ଼ କହିଥିଲେ ଅସହଯୋଗ ଆନ୍ଦୋଳନ ପିଲାଖେଳ ଭଳି, ଲୋକେ ଏହାକୁ ବଳେ ବଳେ ତ୍ୟାଗ କରିବେ । କେବଳ ସେ ନୁହନ୍ତି ତାଙ୍କପରେ ଯେ ଆସିଲେ ଲର୍ଡ଼ ରିଡ଼ିଂ ସେ ମଧ୍ୟ କ୍ରମେ କ୍ରମେ ଘଟଣା ବୁଝି ପାରିଲେ । ଇଂରେଜ ରାଜନୈତିକମାନେ ବୁଝି ପାରିଲେ ଯେ ଭାରତରେ ଏକ ନୂତନ ଶକ୍ତିଶକ୍ତିର ଉଦ୍ରେକ ହୋଇଛି ଓ ଜନମତ ପ୍ରକାଶ ପାଇବାର ସୁବିଧା ପାଉଛି । ଦେଶର ଲକ୍ଷ୍ୟ ସ୍ୱାଧୀନତା ଆନ୍ଦୋଳନରୁ ବଦଳାଇ ଦେବାପାଇଁ ଓ ରାଜଭକ୍ତମାନଙ୍କୁ ଏକଜୁଟ କରିବା ପାଇଁ ସମ୍ରାଟଙ୍କ ପୁଅଙ୍କୁ ଏ ଦେଶକୁ ଆଣିବା-ବେଳେ ତାଙ୍କ ଅଭ୍ୟର୍ଥନା ବର୍ଜନ ପାଇଁ ଯେପରି ହରତାଳ ସବୁ ହୋଇଥିଲା ସେଇଥିରୁ ଶାସକ ପ୍ରତି ଲୋକମତ ବେଶ ପ୍ରକାଶ ପାଉଥିଲା । ସ୍ୱୟଂସେବକ ଅନୁଷ୍ଠାନମାନଙ୍କୁ 'ବେଆଇନ' ଘୋଷଣା କରାଗଲା ଓ ନେତାମାନଙ୍କୁ କାରାଗାରରେ ବନ୍ଦ କରା-ଗଲା; କିନ୍ତୁ ମନୋଭାବକୁ ଦମନ କରାଯାଇ ପାରିଲା ନାହିଁ । ମହାସଭାର ନବାଗତ ସଭାପତି ଦେଶବନ୍ଧୁ ଦାସ, ମୋତିଲାଲ ନେହେରୁ, ଲାଲା ଲଜପତ୍ ରାୟ, ଆଲି ଭାଇ ଦୁଇଜଣ ଓ ଅନ୍ୟାନ୍ୟ ନେତାମାନେ କାରାଗାରରେ ଥିଲେ ମଧ୍ୟ ଅହମଦା-ବାଦଠାରେ ବସିଥିବା ମହାସଭା ଇଂରେଜ ଶାସନତନ୍ତ୍ର

ବିରୋଧରେ ଯୁଦ୍ଧ ଘୋଷଣା କରି ମହାତ୍ମା ଗାନ୍ଧୀଙ୍କୁ ସେନାପତି ନିଯୁକ୍ତ କଲା । ମହାସଭାର ମନୋବୃତ୍ତିରୁ ଶାସନ କର୍ତ୍ତୃପକ୍ଷ ବେଶ୍ ବୁଝି ପାରିଲେ ଯେ ନେତାମାନଙ୍କ କାରାଦଣ୍ଡ ଜାତିର ଜାଗରଣକୁ ବାଧାଦେଇ ପାରିବ ନାହିଁ । ତେଣୁ ଅନ୍ୟ ଉପାୟ ଅବଲମ୍ବନ କରାଗଲା । ସେତେବେଳେ ଦେଶ ଯେପରି ଭାବରେ ନିର୍ଯ୍ୟାତିତ ହୋଇଥିଲା ତା'ର ବିବରଣ ସଂଗ୍ରହ କରିବାକୁ ଇତିହାସ ନିଜେ ଲଜ୍ଜାବୋଧ କରିବ ।

ବର୍ଦ୍ଦୋଲିରେ ନିଜେ ଗାନ୍ଧୀଙ୍କ ନେତୃତ୍ୱରେ ଆଇନ ଅମାନ୍ୟ କରାହେବାର ସ୍ଥିର ହେଲା । ଏ ସମ୍ବାଦ ଅତି ଦୁର୍ବଳ ଲୋକ ମନରେ ମଧ୍ୟ ବଳ ଆଣିଦେଲା । ୧୯୨୨ ସାଲ ଆରମ୍ଭରେ ଦେଶର ବାୟୁମଣ୍ଡଳ ବିଦେଶୀ ଶାସନ ପ୍ରତି ବିରୁଦ୍ଧ ଭାବରେ ପୂର୍ଣ୍ଣ ହେଲା । କାରଣ ସେ ଶାସନ ଲୋକମତ ପ୍ରତିଷ୍ଠିତ ନଥିଲା । ଅନ୍ୟ ପ୍ରଦେଶ ଯେପରି ଓଡ଼ିଶା ମଧ୍ୟ ସେପରି ବିରୁଦ୍ଧଭାବ ପୋଷଣ କରିଥିଲା । ଏ ଭାବକୁ ସେତେବେଳକାର ଦାୟିତ୍ୱଶୂନ୍ୟ ଶାସନ କିପରି ଦବାଇବା ପାଇଁ ଉଦ୍ୟମ କରିଥିଲେ ଦେଖାଯାଉ ।

ପ୍ରଥମେ ଯଥେଚ୍ଛାଚାରର କ୍ଷମତାକୁ ଅମାନ୍ୟ କରିବା ପାଇଁ ବେଆଇନ ଘୋଷିତ ହୋଇଥିବା ସ୍ୱୟଂସେବକ ଅନୁଷ୍ଠାନର ସଭ୍ୟ ହେବା ପାଇଁ ଲୋକଙ୍କୁ କୁହାଯାଇଥିଲା । ସରକାରଙ୍କର ଏ ଆଦେଶକୁ ଅମାନ୍ୟ କରିବା ପାଇଁ ଉତ୍କଳ ପ୍ରାଦେଶିକ ମହାସଭା ଖୁବ୍ ଲାଗି ପଡ଼ିଥିଲେ । ହଜାର ହଜାର ସ୍ୱୟଂସେବକ ସହରରେ ନୁହେଁ ସୁଦୂର ପଲ୍ଲୀରେ ମଧ୍ୟ ତାଲିକାଭୁକ୍ତ ହୋଇଥିଲେ; କିନ୍ତୁ ମହାତ୍ମା ଗାନ୍ଧୀଙ୍କ କାର୍ଯ୍ୟକ୍ରମର ନ୍ୟାଯ୍ୟ ବିଚାର କରିବାକୁ ହେଲେ ସ୍ୱେଚ୍ଛାସେବକର ଯେଉଁସବୁ ଦକ୍ଷତା ଥିବା ଦରକାର ବୋଲି

ମହାସଭା କହିଥିଲେ ତା' ଉପରେ ଯୋର ଦିଆଯାଉ ନଥିଲା । ଏହା ପ୍ରାଦେଶିକ ମହାସଭାର ଜଣାଶୁଣାରେ ହେଉଥିଲା । ଲେଖକ ସେତେବେଳେ ପ୍ରାଦେଶିକ ମହାସଭାର କାର୍ଯ୍ୟକାରୀ ସମିତିର ସଭ୍ୟଥିବା ଯୋଗେ ସେ ଏକଥା ଜାଣେ । ସେତେବେଳେ ଏପରି ଜଣାଗଲା ଯେ ସେସବୁ ଦକ୍ଷତାକୁ ଧରି ବସିଲେ ବେଶି ସଂଖ୍ୟାରେ ସ୍ୱୟଂସେବକ ସଂଗ୍ରହ ହୋଇପାରିବେ ନାହିଁ । ନିର୍ଦ୍ଧାରିତ ଦକ୍ଷତା ଭିତରୁ କେତୋଟି ହେଉଛି ସ୍ୱିତମତ ସୂତାକାଟିବା, ଖଦଡ଼ ପିନ୍ଧିବା ଓ କାୟୋମନୋବାକ୍ୟରେ ଅହିଂସା ଆଚରଣ କରିବା । ଏସବୁ ଦକ୍ଷତାର ବିଶେଷତଃ ଅହିଂସା ଆଚରଣର ତାତ୍ପର୍ଯ୍ୟ ଯେଉଁମାନଙ୍କୁ ସ୍ୱୟଂସେବକ ରୂପେ ଗ୍ରହଣ କରାଗଲା ସେମାନଙ୍କୁ ବୁଝାଇ ଦିଆଗଲା ନାହିଁ କିମ୍ବା ଯେଉଁମାନେ ସ୍ୱୟଂସେବକ ସଂଗ୍ରହ କରୁଥିଲେ ସେମାନେ ମଧ୍ୟ ନିଜେ ବୁଝିପାରିଲେ ନାହିଁ । ଏଥିରୁ କେହି ଯେପରି ନ ବୁଝନ୍ତୁ ଯେ ଅହିଂସା ଓ ଖଦଡ଼ର ମୂଳନୀତିକୁ ଏକବାରେ ଛାଡ଼ି ଦିଆ ହୋଇଥିଲା । ଏକଥା ନୁହେଁ—କର୍ମୀମାନେ ଏସବୁ ଦକ୍ଷତା ଉପରେ ଯୋରଦେଇ ନଥିଲେ, ସେଥିପାଇଁ ବାୟୁମଣ୍ଡଳ ହିଂସାର ଚିହ୍ନରୁ ସମ୍ପୂର୍ଣ୍ଣ ମୁକ୍ତ ନଥିଲା । ଅପର ପକ୍ଷରେ ହିଂସା ଆଚରଣ କରିବାକୁ ମନ ବଳାଭି ଏପରି ଅବସ୍ଥାର ମଧ୍ୟ ସୃଷ୍ଟି କରାହୋଇଥିଲା । ଓଡ଼ିଶାର ନିର୍ଯ୍ୟାତନା ମାନସୀ କଳ୍ପନା ମଧ୍ୟରେ ସୀମାବଦ୍ଧ ନଥିଲା, ତେଣୁ ପ୍ରତିହିଂସା ସାଧନା ପାଇଁ ହିଂସା ଆଚରଣ କରିବାର ବହୁତ ସମ୍ଭାବନା ଥିଲା । ଓଡ଼ିଶାରେ ହିଂସା ଆଚରଣ ନହେଲା ସେଥିରୁ ବୁଝାଯିବ ନାହିଁ ଯେ ଓଡ଼ିଶା ଏକବାରେ ଅହିଂସାରେ ପୂର୍ଣ୍ଣ ଥିଲା । ଅପରନ୍ତୁ ବୋଧହୁଏ କାପୁରୁଷତା ଓ ଭୀରୁତାବଶତଃ ହିଂସା ଆଚରିତ ହୋଇ

ନଥିଲା । ଅହିଂସାର ତାତ୍ପର୍ଯ୍ୟ ଭଲକରି ଓଡ଼ିଶାରେ ପ୍ରଚାରିତ ନ ହୋଇଥିବାରୁ ସେତେବେଳେ ଲୋକେ କୌଣସି ପ୍ରକାର ଜବାବ ନଦେଇ ଅମାନୁଷିକ ଅତ୍ୟାଚାର ସହ୍ୟ କରିଗଲେ । ଅହିଂସାଜନକ ଭାବରେ ଏ ଅତ୍ୟାଚାରର ପ୍ରତିରୋଧ କରିଥିଲେ ଅତି ଉତ୍କୃଷ୍ଟ ହୋଇଥା'ନ୍ତା । କିନ୍ତୁ ହିଂସା ବା ଅହିଂସା କୌଣସି ପ୍ରକାର ପ୍ରତିରୋଧର ଅଭାବରୁ ବୁଝିବାକୁ ହେବ ଭୀରୁତା ଲୋକଙ୍କ ଭିତରେ ଥିଲା । ଓଡ଼ିଶାର ଅତ୍ୟାଚାରକୁ ତିନି ଭାଗରେ ବିଭକ୍ତ କରାଯାଇପାରେ । ୧ମ ଧରପୋଡ଼, ୨ୟ କନକା, ୩ୟ ସାଧାରଣ । ଘଟଣା ସବୁ ଠିକ୍ ତାରିଖ ପରେ ତାରିଖ ବର୍ଣ୍ଣିତ ନହେଲେ ମଧ୍ୟ ଉପରୋକ୍ତ ବିଭାଗ ଅନୁସାରେ ଲେଖାଯାଇଅଛି ।

# ଘାତ

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଯେତେବେଳେ ଇଉରୋପୀୟ ମହାଯୁଦ୍ଧ ପରେ 'ଶାନ୍ତି, ଶାନ୍ତି' ରବରେ ପୃଥିବୀ କମ୍ପୁଥିଲା ଓ ଇଂଲଣ୍ଡ ହିଁ ସର୍ବୋଚ୍ଚ ସ୍ୱରରେ ଏହି ଶାନ୍ତି ବାର୍ତ୍ତା ପ୍ରଚାର କରୁଥିଲା; ସେତେବେଳେ କିଏ ବିଶ୍ୱାସ କରିବ ଯେ ଓଡ଼ିଶା ପରି ଭୂମିରେ ପୂର୍ଣ୍ଣ ଅହିଂସାତ୍ମକ ଗୋଟିଏ ଆନ୍ଦୋଳନକୁ ଜବଦ୍ କରିବାପାଇଁ କେତେ ଲୋକ ଭୟଙ୍କର ଭାବରେ ଘରପୋଡ଼ି ଦେବା ଉପାୟ ଅବଲମ୍ବନ କରିଥିଲେ । ସେତେବେଳର ବାଣ୍ଟିଧିକା ବର୍ତ୍ତମାନସୁଦ୍ଧା ପୁରପଲ୍ଲୀର ଲୋକେ ଭୁଲି ନାହାନ୍ତି । ଏ ଭୟଙ୍କର କାଣ୍ଡର କେନ୍ଦ୍ର କଟକରେ ଥିଲା ଓ ଭିନ୍ନ ଭିନ୍ନ ସହର ମଫସଲରେ ଏ ଘୃଣ୍ୟ କାର୍ଯ୍ୟ ସେଇଠୁଁ କରା ହୋଇଥିଲା । ଏ ବିଷୟ ବର୍ଣ୍ଣନା କଲାବେଳେ ଲେଖକ ବଡ଼ ସାବଧାନ ଅଛି କାଳେ ଅତିରଞ୍ଜିତ ଦୋଷରେ ପଡ଼ିଯିବ ମାତ୍ର, କମେଇ କରି ଲେଖିଲେ ମଧ୍ୟ ଲେଖକ ସେ ଦୋଷରୁ ବୋଧହୁଏ ମୁକ୍ତି ପାଇବ ନାହିଁ, କାରଣ ସେ ଭୟଙ୍କର ବ୍ୟାପାର ମନୁଷ୍ୟର କଳ୍ପନାତୀତ ।

ଖୁବ୍ କମ୍‌ରେ ଅନ୍ତତଃ ୨୦,୦୦୦ ଘର ପୋଡ଼ା ହୋଇ-ଥିଲା । ଏକା କଟକରେ ପ୍ରାୟ ୮୦୦୦ ଘର ପୋଡ଼ା ହୋଇଥିଲା । ପ୍ରାୟ ଏକମାସ ପର୍ଯ୍ୟନ୍ତ ସହର ଘରପୋଡ଼ିର ଆତଙ୍କ ବ୍ୟାପି ରହିଥିଲା । ଲୋକେ ରାତିରେ ଶୋଇଲେ ନାହିଁ । ରାତି-ଦିନ 'ହୋଇଗଲାରେ, କିଏ ଗଲାରେ' ବୋଲି ଚିତ୍କାର କରି ଘର ଜଗି

ବସିଲେ । ରାତ୍ରିଅଧରେ ସ୍ତ୍ରୀ ଲୋକଙ୍କ ଆର୍ତ୍ତନାଦ ବର୍ତ୍ତମାନ ସୁଦ୍ଧା ଲେଖକର କାନରେ ବାଜୁଛି । ଦିନବେଳେ ସୁଦ୍ଧା ଘରେ ନିଆଁ ଲଗାଇ ଦିଆହେଉଥିଲା । ଏହି ଅଗ୍ନିକାଣ୍ଡ ଲୋକଙ୍କ ଧୈର୍ଯ୍ୟ ଓ ଅହିଂସାରେ ପଦାଘାତ କରି ଅଗ୍ରସର ହେଲା । କିଏ ଘରେ ନିଆଁ ଲଗାଉଥିଲା, ଠିକ୍‌କରି କହି ହେବନାହିଁ, ମାତ୍ର ଲୋକେ ବିଶ୍ୱାସ କରନ୍ତି ଯେ କେତେକ ପୋଲିସ କର୍ମଚାରୀ ଏ ଜଘନ୍ୟ କାର୍ଯ୍ୟ କରୁଥିଲେ । ପୋଲିସ ବାଲା କହୁଥିଲେ ଯେ, ମହାସଭାର ଲୋକେ ନିଆଁ ଲଗାଇ ଦେଉଛନ୍ତି । ସହରରେ ଓ ଗାଁରେ ପୋଲିସ କନେଷ୍ଟବଳ ଚୌକିଦାରମାନଙ୍କୁ ଘରପୋଡ଼ି ଅଭିଯୋଗରେ ଧରି ଲୋକେ ମାଡ଼ ଦେଉଥିଲେ । ଥରେ କଟକରେ ଜଣେ ପୋଲିସ କନେଷ୍ଟବଳକୁ ଲୋକେ ଧରି ମାରି ବେହୋସ୍ କରି ରାସ୍ତାରେ ପକାଇ ଦେଲେ । ମହାସଭାର କେତେଜଣ କର୍ମୀ ତାକୁ ସ୍ୱରାଜ୍ୟ ଆଶ୍ରମକୁ ନେଇ ଆସି ତା'ର ସବୁପ୍ରକାର ଶୁଶ୍ରୂଷା କରିଥିଲେ । ତା'ର ପୋଷାକ ରକ୍ତରେ ଭିଜି ଯାଇଥିବାରୁ ତା'ର ପୋଷାକ ବଦଳାଇ ଅନ୍ୟ ଲୁଗା ପିନ୍ଧିବାକୁ ଦେଇଥିଲେ । ସ୍ୱରାଜ୍ୟ ଆଶ୍ରମରେ ଖଦଡ଼ ଛଡ଼ା ତ ଅନ୍ୟ ଲୁଗା ନଥିଲା,, କନେଷ୍ଟବଳ ଯେଉଁ ଲୁଗା ଖଣ୍ଡି ପିନ୍ଧିଲା ସେ ଖଣ୍ଡି ତେଣୁ ଖଦଡ଼ ଥିଲା । କନେଷ୍ଟବଳ ଆଶ୍ୱସ୍ତ ହୋଇ ତା' ସ୍ଥାନକୁ ଚାଲିଗଲା । ଏହି ଘଟଣାକୁ ପୋଲିସ ରଟିଲେ ଯେ ମହାସଭାର ଲୋକେ ଜଣେ କନେଷ୍ଟବଳକୁ ମାରି ଜବରଦସ୍ତି ଖଦଡ଼ ପିନ୍ଧାଇ ଦେଇଛନ୍ତି । ଜବରଦସ୍ତି ମହାସଭାରେ ମିଶାଇବା ପାଇଁ ଘରପୋଡ଼ି ଦେଇଛନ୍ତି, ଏହାହିଁ ମହାସଭାର ଲୋକଙ୍କ ବିରୁଦ୍ଧରେ ଅଭିଯୋଗ ଥିଲା । ଅହିଂସାର ଅବତାର ପଣ୍ଡିତ ଗୋପବନ୍ଧୁଙ୍କ

ବିରୋଧରେ ମଧ୍ୟ ଏହିପରି ଭାବରେ ସାକ୍ଷ୍ୟଦିଆ ହୋଇଥିଲା । ଗୋପବନ୍ଧୁ ମହାସଭାରେ ଲୋକଙ୍କୁ ମିଶାଇବା ପାଇଁ କପରି ଜୋର୍ ଜବରଦସ୍ତି କରୁଛନ୍ତି, ଏକଥା ପ୍ରମାଣ କରିବାକୁ ଯାଇ ଉପରୋକ୍ତ କନେଷ୍ଟବଳ ଘଟଣା ମଧ୍ୟ କୁହା ହୋଇଥିଲା । ପୋଲିସ ଯାହା କହୁଥାଉ ପଛକେ, ପ୍ରକୃତ ଘଟଣା ତାହା ନଥିଲା । କାରଣ ଅନେକ ମହାସଭାରେ ଯୋଗଦେଇଥିବା ଲୋକର ଘର ମଧ୍ୟ ପୋଡ଼ି ଯାଇଥିଲା ଓ ବହୁ ଲୋକଙ୍କୁ ପୋଲିସ କର୍ମଚାରୀଙ୍କୁ ଘରପୋଡ଼ି ଅଭିଯୋଗରେ ଧରି ମାରିବା ଅପରାଧରେ ଜେଲ୍ ଦିଆ ହୋଇଥିଲା । ଲୋକେ ଯେ ପୋଲିସ କର୍ମଚାରୀଙ୍କୁ ସନ୍ଦେହ କରୁଥିଲେ ଏଥିରେ ପ୍ରଶ୍ନ କରିବାର କିଛି ନାହିଁ । ଜନମତ ଏପରି ଉତ୍କ୍ଷିପ୍ତ ହୋଇ ଉଠିଥିଲା ଯେ ପୋଲିସ କର୍ମଚାରୀମାନେ ଘରୁ ବାହାରି ପାରୁ ନ ଥିଲେ । ପ୍ରତ୍ୟେକ ପୋଲିସ ଲୋକଙ୍କୁ ସନ୍ଦେହ କରି ବସ୍ତିକୁ ବା ସାହିକୁ ଲୋକେ ପୁଞ୍ଜି ଦେଲେ ନାହିଁ । ଏହି ସମୟରେ କଟକରେ ରିଜର୍ଭ ପୋଲିସ କନେଷ୍ଟବଳମାନେ ଧର୍ମଘଟ କରିବେ ବୋଲି ବସିଥିଲେ । ଧର୍ମଘଟର କାରଣ ସେମାନଙ୍କ ବିରୋଧରେ ଲୋକମତ ବୋଲି କୁହା ଯାଇଥିଲା । କଟକ ପୋଲିସଙ୍କ ଏ କାର୍ଯ୍ୟ ସାଇମନ କମିଶନ ରିପୋର୍ଟ ପ୍ରଥମ ଭାଗରେ ସ୍ଥାନ ପାଇଛି ।

ଲେଖକ ପକ୍ଷରେ ଏହା ନିତାନ୍ତ ଦୁଃଖର ବିଷୟ ଯେ, ଘରପୋଡ଼ିକୁ କିଏ କରାଉଥିଲା, ସେ ଆଜି ଜଗତକୁ ଘୋଷଣା କରିବାକୁ ସମର୍ଥ ନୁହେଁ । ସେତେବେଳେକାର ବାଲେଶ୍ୱର ପୋଲିସ ସାହେବ ଯଦି ବଞ୍ଚିଥାନ୍ତେ ଓ ଲେଖକ ଯଦି ସେ ସମୟରେ ହଠାତ୍ ଧରାହୋଇ ଜେଲ୍ ଚାଲିଯାଇ ନ ଥାନ୍ତା ତେବେ ସେ ଆଜି ନିର୍ଭୟରେ କହି ଦିଅନ୍ତା ଘରପୋଡ଼ା କିଏ ।

ଯେତେବେଳେ ଘରପୋଡ଼ିର ଆତଙ୍କ କଟକରୁ ବାଲେଶ୍ୱର ବ୍ୟାପିଲା ଓ ସଙ୍ଗେ ସଙ୍ଗେ ଏଇକଥା ମଧ୍ୟ ଲୁହାଗଲା ଯେ ମହାସଭାର ଲୋକେ ଘରପୋଡ଼ି ଦେଉଛନ୍ତି, ଲେଖକ ସେତେବେଳେ ବାଲେଶ୍ୱର ତତ୍କାଳୀନ ଜିଲ୍ଲାମାଜିଷ୍ଟ୍ରେଟ ଶ୍ୟାମଲାଲ ଗୁପ୍ତ ଓ ପୋଲିସ ସାହେବ ହଡ଼ସନ୍ ସାହେବଙ୍କ ଠାକୁ ଲେଖିଥିଲା ଯେ ରାଜନୈତିକ ମତଭେଦକୁ ପଛକୁ ପକାଇ ଦେଇ ଉପସ୍ଥିତ ସମସ୍ୟାରେ ଏକଯୋଗ ହୋଇ ସହରରେ ଶାନ୍ତି ସ୍ଥାପନ କରିବା କର୍ତ୍ତବ୍ୟ । ଏ ପ୍ରସ୍ତାବରେ ସେ ଦୁହେଁ ଏକମତ ହୋଇଥିଲେ । ଲେଖକର ପରାମର୍ଶ ଅନୁସାରେ ଗୋଟିଏ ସାଧାରଣ ସଭାରେ "ସହର ସଂରକ୍ଷଣ ସମିତି" ନାମରେ ଗୋଟିଏ ସମିତି ଗଠିତ ହେଲା । ଏ ସମିତିର କାମ ହେଲା ସ୍ଥାନେ ସ୍ଥାନେ ପାଣିକଳସୀ ମହଜୁତ ରଖିବା । ଯେଉଁସବୁ ଗରିବ ଲୋକେ ରାତିସାରା ଘର ଜଗି ଦିନରେ କାମକରି ପାରୁ ନାହାନ୍ତି ସେମାନଙ୍କୁ କିଛି କିଛି ଅର୍ଥ ସାହାଯ୍ୟ ଦେବା । ଯେଉଁମାନେ ରାତିସାରା ଘର ଜଗିବା ଯୋଗୁଁ ଦୀପ ଜାଳି ରଖିବା ପାଇଁ ତେଲ ପାଉ ନାହାନ୍ତି ସେମାନଙ୍କୁ ତେଲ ଯୋଗାଇବା । ରାତି ଦିନ ସହର ପରିକ୍ରମା କରି ସତର୍କ କରାଇବା ଏବଂ ପୋଲିସକୁ ସନ୍ଦେହ କରି କେହି ଯେପରି ମାରଧର ନ କରନ୍ତି, ତାହାର ବ୍ୟବସ୍ଥା କରିବା ।

ଏ ସମିତିର ସଭାପତି ଶ୍ୟାମଲାଲ ଗୁପ୍ତ, ସହକାରୀ ସଭାପତି ହଡ଼ସନ୍ ସାହେବ ଓ ଲେଖକ ସମ୍ପାଦକ ହୋଇଥିଲେ । ସଭାପତି ପ୍ରଥମେ ଏ ସଭାକୁ ନିଜ ହାତରୁ ୫୧୦ଙ୍କା ଚନ୍ଦା ଦେଇଥିଲେ । ଏ ସମିତିରେ ମହାସଭାର ସମସ୍ତ କର୍ମୀ କାମ କରିଥିଲେ । ରାତିଦିନ ସହରରମାନ୍ ପହରା ଦିଆ ହୋଇଥିଲା ।

କେତେକ ସ୍ଥାନରେ ନିଆଁ ଲଗାଉଥିବା ବେଳେ ଲୋକଙ୍କୁ ଧରି ହୋଇ ବିଚାରପାଇଁ ପଠାହୋଇଥିଲା । ବିଚାରରେ ଏମାନଙ୍କୁ ପାଗଳ ବୋଲି ଘୋଷଣା କରି ଛାଡ଼ି ଦିଆ ଯାଇଥିଲା । ଘଟଣାଚକ୍ରରେ ଦିନସାରା ଘରେ କବାଟ କିଳି ରହୁଥିନ୍ତି ଓ ରାତିରେ ଏମାନେ ବାହାରନ୍ତି, ଏହିପରି ଦଶବାର ଜଣ ଲୋକ ଧରା ପଡ଼ିଲେ । ଏମାନଙ୍କ ସମ୍ବନ୍ଧରେ ବହୁତ ତଥ୍ୟ ଆବିଷ୍କୃତ ହୋଇଥିଲା । ଏସବୁ ହାଉସନ୍ ସାହେବଙ୍କୁ କୁହା ହୋଇଥିଲା । ସେ ହସି ଦେଇ କହିଥିଲେ "ଏସବୁ ଅନୁସନ୍ଧାନ କରି ଲାଭ ନାହିଁ ।" ଆଶ୍ଚର୍ଯ୍ୟର ବିଷୟ ଏହି ଦଳଟି ଧରା ହେବା ପରେ ଘରପୋଡ଼ି ଆତଙ୍କ ବନ୍ଦ ହୋଇ ଯାଇଥିଲା । "ସହର ସଂରକ୍ଷଣ ସମିତି"ର କାର୍ଯ୍ୟ ଶେଷ ହେଲା । ଯାହା ଯାହା ଏ ସମିତି ଜାଣି ପାରିଥିଲେ ଲେଖା ହୋଇଥିଲା; ମାତ୍ର ଅଳ୍ପ ଦିନପରେ ଲେଖକ ଧରା ହୋଇ ଯିବାରୁ ଓ ଏ ମଧ୍ୟରେ ହାଉସନ୍ ସାହେବ ମରିଯିବାରୁ ସେ ସମିତିର ରିପୋର୍ଟ ପ୍ରକାଶିତ ହୋଇ ପାରିଲା ନାହିଁ । ହାଉସନ୍ ସାହେବ ଜଣେ ସଦାଶୟ ଉଚ୍ଚଦରର ରାଜକର୍ମଚାରୀ ଥିଲେ । ଶାସନ ଯନ୍ତ୍ର ତାଙ୍କ ହୃଦୟକୁ ଗ୍ରାସ କରି ପାରି ନ ଥିଲା । ଘରପୋଡ଼ି କଥା ମନେଥିବା ପର୍ଯ୍ୟନ୍ତ ତାଙ୍କର ନାମ ବରାବର ମନେଥିବ ।

ଗୋଟିଏ କଥା ହଜାର ହଜାର ଘର ପୋଡ଼ିଗଲା । କିନ୍ତୁ ସରକାରଙ୍କ ତରଫରୁ କୌଣସି ଅନୁସନ୍ଧାନ ବା ସନ୍ତୋଷଜନକ କୈଫିୟତ୍ ଆଜି ପର୍ଯ୍ୟନ୍ତ ଲୋକଙ୍କୁ ମିଳି ନାହିଁ । ସେତେବେଳେ କଂଗ୍ରେସ ବାହାରେ ଯେଉଁସବୁ ଶିକ୍ଷିତ ଓ ସାଧାରଣ ସେବୀ ବୋଲି ପରିଚିତ ଭଦ୍ରଲୋକ ଥିଲେ, ଯେମାନେ ପଦେ ହେଲେ ପାଟି ଫିଟାଇ ନାହାନ୍ତି । ଯାହାହେଉ ଏ ଘର ପୋଡ଼ିରେ ଓଡ଼ିଶାର ନର୍ଯ୍ୟାତନା ଶେଷ ନୁହେଁ ଆହୁରି ମଧ୍ୟ ଅଛି ।

# କନକା ଅତ୍ୟାଚାର

କନକା ଅତ୍ୟାଚାରର ସମୁଦାୟ ଯଥାଯଥ ବର୍ଣ୍ଣନା କରିବାକୁ ଗଲେ ଗୋଟିଏ ସ୍ୱତନ୍ତ୍ର ପୁସ୍ତକ ହେବ ମାତ୍ର, ସାଧାରଣ ଓଡ଼ିଶାର ଜୀବନ ସହିତ ତାହାର ସମ୍ପର୍କ ଥିବାରୁ ଏଠାରେ ତା'ର ସଂକ୍ଷିପ୍ତ ବିବରଣୀ ମାତ୍ର ଦିଆଯାଇଛି ।

କନକା ଜମିଦାରୀର କେତେକ ଅଂଶ କଟକ ଜିଲ୍ଲାରେ ଓ କେତେକ ଅଂଶ ବାଲେଶ୍ୱର ଜିଲ୍ଲାରେ । କଟକ ଜିଲ୍ଲାର ଅଂଶକୁ ଛମୁକା ଓ ବାଲେଶ୍ୱର ଜିଲ୍ଲାର ଅଂଶକୁ ପାଞ୍ଚମୁକା କହନ୍ତି । ଏ ଜମିଦାରୀ ଅତି ପୁରାତନ ଓ ଏହାର ମଧ୍ୟ ଇତିହାସ ଅଛି । ପ୍ରଥମେ ଇଂରେଜମାନେ ଆସିଥିଲାବେଳେ କନକା ସେମାନଙ୍କୁ ବାଧା ଦେଇଥିଲା । ନହେଲେ କନକା ଗୋଟିଏ ଗଡ଼ଜାତ ହୋଇ ରହିଥାନ୍ତା । ଅସହଯୋଗ ଆନ୍ଦୋଳନ ପୂର୍ବରୁ କନକାର ରାଜା ଜଣେ ଦେଶସେବୀ ବୋଲି ଖ୍ୟାତି ଅର୍ଜନ କରିଥିଲେ । ସେ ଉତ୍କଳ ସମ୍ମିଳନୀର ଜଣେ କର୍ଣ୍ଣଧାର ଥିଲେ । ମଧୁବାବୁଙ୍କର ସେ ଡାହାଣ ହାତ ଥିଲେ । ୧୯୨୧ ସାଲରେ ରାଜାଙ୍କ ତରଫରୁ ପ୍ରଜାଙ୍କ ଜମିଜମା ଘେରେଇ ବନ୍ଦୋବସ୍ତ କରିବାର ପ୍ରସ୍ତାବ ହୋଇଥିଲା । ଏଥିରେ ପ୍ରଜାମାନେ ଆପତ୍ତି କଲେ, ସେମାନଙ୍କର

ଉପୁ ହେଲା ପୁଣି ଖଜଣା ବଢ଼ିବ । ଏହା ଛଡ଼ା ଅହିଂସା ଅସହ-ଯୋଗର ପ୍ରଚାର ଫଳରେ ଗ୍ରାମାଞ୍ଚଳରେ ଟିକିଏ ଚୈତନ୍ୟ ଉଦ୍ଭବ ହୋଇଥାଏ । ପ୍ରଜା ନିଜର ସତ୍ୟରକ୍ଷା ପାଇଁ ତତ୍ପର ହେଲେ । ରାଜା ନିଜେ ବନ୍ଦୋବସ୍ତ କରିବେ କି ସରକାରୀ ବନ୍ଦୋବସ୍ତ ହେବ, ଏଇଥିପାଇଁ ରାଜା ପ୍ରଜାଙ୍କ ମଧ୍ୟରେ ମନୋମାଳିନ୍ୟ ହେଲା । ପ୍ରଜାମାନେ ଜିଦ୍ ଧରି ବସିଲେ ସରକାରୀ ବନ୍ଦୋବସ୍ତ ହେଉ । ଏଇଥି ପାଇଁ ସଭା ସମିତି ମାନ ହେଲା । ପ୍ରଜା ଖଜଣା ଦେବାପାଇଁ ଗଲାବେଳକୁ ନିଆ ହେଲାନାହିଁ । ପ୍ରଜାମାନେ କେନ୍ଦ୍ରାପଡ଼ା ଖଜଣାଖାନାରେ କେତେ ଟଙ୍କା ଦାଖଲ କଲେ । ସେ ଯାହା ହେଉ ରାଜାପ୍ରଜାଙ୍କର ଏ ଜମିଦାରୀ ବିବାଦକୁ ଏପରି ରଙ୍ଗ କରାଗଲା ଯେ, କନିକା ପ୍ରଜାଙ୍କ ଆନ୍ଦୋଳନ ହେଉଛି କଂଗ୍ରେସ ଆନ୍ଦୋଳନର ଗୋଟିଏ ଅଂଶ । ଏଣୁ ଏହାକୁ ଦବାଇବା ପାଇଁ ପୋଲିସ ଓ ସରକାର ସମସ୍ତେ ଲାଗିଲେ । ସେତେବେଳେ କଟକର କଲେକ୍ଟର ବି. ଏନ୍. ରାୟ ଅସଲ ସତ୍ୟ ଜାଣିଥିବାର ବିଶ୍ୱାସ କରାଯାଏ । ସେ ହଠାତ୍ ବଦଳି ହୋଇଗଲେ । କନିକା ପ୍ରଜାଙ୍କୁ ଦବାଇବା ପାଇଁ କଟକରୁ ସଶସ୍ତ୍ର ପୋଲିସ ଗଲେ । ସେମାନେ କନିକାରେ ଯେ କି ଅତ୍ୟାଚାର କରିଗଲେ ତାହା ବର୍ଣ୍ଣନା କଲେ ବର୍ତ୍ତମାନ ସୁଦ୍ଧା ଲୋମ ଶିହରି ଉଠିବ । ଘରଦ୍ୱାର ଲୁଟ ହୋଇଗଲା । ନଗଦ ଟଙ୍କା, ଗହଣାଗାଣ୍ଠି, କିଛି ରହିଲା ନାହିଁ । ନିର୍ଦ୍ଦୟ ଭାବରେ ଲୋକଙ୍କୁ ମାଡ଼ ଦିଆଗଲା । ଘର ଘର ପଶି ସ୍ତ୍ରୀଲୋକମାନଙ୍କୁ ଅପମାନ ଦିଆଗଲା । ଗୋଟିଏ ଘରେ ସ୍ୱାମୀକୁ ବାନ୍ଧି ପକାଇ ତାହାରି ଆଗରେ ତା'ର ସ୍ତ୍ରୀର ଇଜ୍ଜତ ନଷ୍ଟ କରାଗଲା । ଜଣେ ଗର୍ଭିଣୀ ସ୍ତ୍ରୀ ପଳାଇଯାଇ ବଣରେ ପ୍ରସବ କରି

ପକାଇଲ । ଶିଶୁଟି ଶିଆଳ କୁକୁରଙ୍କ ପାଟିରେ ପଡ଼ିଲ । ପ୍ରାୟ କୋଡ଼ିଏ ଲକ୍ଷ ଟଙ୍କାର ସମ୍ପତ୍ତି ଲୁଟ ହୋଇଗଲା । ସେତେବେଳେ ଲୋକ ଦଳବଦ୍ଧ ହୋଇ ପୋଲିସ ସାହେବଙ୍କ ପାଖକୁ ଆପତ୍ତି କରିବାକୁ ଆସୁଥିଲେ । ଓଲଟା ସେମାନଙ୍କ ଉପରେ ଗୁଳି ଚଳାହେଲା । ତିନିଜଣ ଲୋକ ପିଠିରେ ଗୁଳିଖାଇ ମରିଗଲେ । ଗ୍ରାମବାସୀମାନେ ନିଜର ସମ୍ପତ୍ତି ଓ ନିଜର ମାନଦେଲେ, ପୁଣି ପ୍ରାୟ ଦେଢ଼ଶହ ଲୋକଙ୍କୁ ଦଙ୍ଗା କରୁଥିବା ଅପରାଧରେ ଗିରଫ୍ତାର କରାହେଲା । ଛମୁକା ଇଲାକାରୁ କେନ୍ଦ୍ରାପଡ଼ା ନିକଟ । ସେଇଠି ସେମାନଙ୍କ ବିଚାର ହେବା କଥା । ମାତ୍ର ସେମାନଙ୍କୁ ହାତକଡ଼ି ଦେଇ ଦୌଡ଼ାରେ ବାନ୍ଧି ଛମୁକାରୁ ବୃନ୍ଦାବାଳ ହୋଇ ପାଞ୍ଚମୁକା ବାଟେ ଭଦ୍ରଖ ଆଣି ସେଠାରୁ ପୁଣି କଟକ ନିଆଗଲା । ସେଠାରୁ କେନ୍ଦ୍ରାପଡ଼ା ବିଚାର ପାଇଁ ନିଆଗଲା । କେନ୍ଦ୍ରାପଡ଼ାରେ ବିଚାର ନହୋଇ ରାଜକନିକାରେ ବିଚାର ହେଲା । ହାକିମ ରାଜାଙ୍କ ଘରେ ରହିଲେ । କୌଣସି ଓକିଲ ବା ମୁକ୍ତାର ସେଠାରେ ନଥିଲେ । ଏହିପରି ଅବସ୍ଥାରେ ନିରୀହ ଲୋକଙ୍କୁ ଜେଲ୍ ଜୋରିମାନା ସବୁ ହୋଇଗଲା । ଏ ଗରିବମାନଙ୍କୁ ଲେଖକ କଟକ ଜେଲ୍‌ରେ ସେତେବେଳେ ଭେଟିଥିଲି ଓ ସେମାନଙ୍କ ସହିତ ଏକ ମାସ ଥିଲି ।

କେବଳ ଏତିକି ନୁହେଁ ବହୁ ବର୍ଦ୍ଧିଷ୍ଣୁ ଲୋକଙ୍କୁ ଏ କନିକାରୁ ବାହାର କରି ଦିଆଗଲା । ତିନିଶହ ମାଣ, ଚାରିଶହ ମାଣ ଏପରି କି ୩୦୦୦ ମାଣ ଜମି ଥିବା ଧନୀ ଲୋକମାନେ ଆଜିସୁଦ୍ଧା ପଥର ଭିକାରୀ ହୋଇ ଏଣେ ତେଣେ ବୁଲୁଛନ୍ତି । ଏମାନଙ୍କ ମଧ୍ୟରୁ ଶ୍ରୀ ଘନବନ୍ଧୁ ଖଣ୍ଡାୟତରାୟ, ଶ୍ରୀ ଜୟରାମ ରାୟ,

ଶ୍ରୀ ଅଶ୍ୱିନୀକୁମାର ପଲ୍ଲଇ, ଶ୍ରୀ ଆନନ୍ଦମୋହନ ଜେନା ପ୍ରମୁଖ ବ୍ୟକ୍ତିମାନେ ପ୍ରଧାନ । କନକାରେ ଯେତେବେଳେ ଏ କାଣ୍ଡ ଚାଲିଥାଏ ତେତେବେଳେ ବାହାରେ କଟକରେ, ଭଦ୍ରକରେ ସବୁଠିଁ ୧୪୪ ଧାରା ଅନୁସାରେ ନୋଟିସ ଜାରୀ ହୋଇଥାଏ ଯେ କେହି କନକା ଘଟଣା ବିଷୟରେ ସଭା ସମିତି କରିପାରିବେ ନାହିଁ । ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ ନିଜେ ସେ ଅଞ୍ଚଳକୁ ଯାଇ କେତେକ ସତ୍ୟ ଘଟଣା ଜାଣି ଆସିଥିଲେ, ତାଙ୍କୁ ବର୍ଷେ ଜେଲ୍ ଦେଇ ଦିଆଗଲା । ପଣ୍ଡିତ ଗୋପବନ୍ଧୁ ଦାଶ, ଭଗୀରଥି ମହାପାତ୍ର ଓ ଅନ୍ୟମାନଙ୍କୁ ଜେଲ୍ ଦିଆଗଲା । କନକା ପ୍ରଜାଙ୍କ ପ୍ରତି ସହାନୁଭୂତି ଏମାନଙ୍କ ବିରୋଧରେ ଅନ୍ୟତମ ଅଭିଯୋଗ ଥିଲା । ପଣ୍ଡିତ ଗୋପବନ୍ଧୁ ଧରା ହେଲାବେଳେ ଯେଉଁ ବିବୃତି ପ୍ରକାଶ କରିଥିଲେ, ସେଥିରେ ସେ ଲେଖିଥିଲେ ଯେ 'କନକା ଘଟଣା ହିଁ ତାଙ୍କ ଧରାହେବାର କାରଣ ଥିଲା' । ସେତେବେଳେ କନକା ରାଜା ଓ ବ୍ରିଟିଶ ସରକାର ଗୋଟିଏ ହୋଇଗଲେ ବରଂ କନକା ବିରୋଧ କହିବା, ସରକାର ବିରୋଧରେ କହିବାଠାରୁ ବଳି ରାଜଦ୍ରୋହମୂଳକ ବିବେଚିତ ହେଲା । କନକାର କଟକ ଜିଲ୍ଲା ଅଂଶରେ ଯେତେବେଳେ ଏହିପରି ନିର୍ଯ୍ୟାତନାର ତାଣ୍ଡବ ନୃତ୍ୟ ଚାଲିଥାଏ ବାଲେଶ୍ୱର ଅଂଶ ପାଞ୍ଚମୁକା ଅପେକ୍ଷାକୃତ ନିଶ୍ଚଳ ଥାଏ । ଏହା କେବଳ ହଡ଼ସନ୍ ସାହେବଙ୍କ ଯୋଗୁଁ ସ୍ୱୀକାର କରିବାକୁ ହେବ । ତଥାପି ସେତେବେଳକାର ଭଦ୍ରକର ସବ୍-ଡିଭିଜନ ଅଫିସର ଶ୍ରୀ ଚନ୍ଦ୍ରଧର ବେହେରା ପ୍ରମୁଖ କେତେଜଣଙ୍କୁ ୧୦୭ ଦଫା ଅନୁସାରେ ଗିରଫଦାର୍ କରି ଜେଲ୍ ଦେଇ-ଥିଲେ, ମାତ୍ର ସେମାନେ ହାଇକୋର୍ଟରେ ଖଲାସ ହୋଇଗଲେ ।

ହାଇକୋର୍ଟ ଘୋଷଣା କଲେ ଯେ କନକା ଆନ୍ଦୋଳନରେ ରାଜଦ୍ରୋହ କିଛି ନାହିଁ । ଏହା ଏକ ଜମିଦାର ପ୍ରଜା ଆନ୍ଦୋଳନ । ସେତେବେଳେ ଭଦ୍ରଖ ସବ୍‌ଡ଼ିଭିଜନ ଅଫିସର ଜଣେ ୬୦ବର୍ଷର ବୃଦ୍ଧା, କନକା ପ୍ରଜାଙ୍କୁ ଭଦ୍ରଖ କଚେରି ଓ ଜେଲ୍‌ଠାରୁ ୨୫ମାଇଲ ଦୂର ଘଣ୍ଟେଶ୍ୱର କନକା ରାଜା କଚେରିରେ ମକଦ୍ଦମା ବିଚାର କରି ସଜା ଦିଆଇଥିଲେ ।

ସେତେବେଳର କଥା ବର୍ତ୍ତମାନ ଭାବିଲେ ଆଶ୍ଚର୍ଯ୍ୟ ବୋଧ-ହୁଏ । ୧୨୪ ଦଫା ଓ ଫୌଜଦାରୀ ସଂଶୋଧିତ ଆଇନ ଏସବୁ କନକା ରାଜାଙ୍କ ଅନ୍ୟାୟ ବିରୋଧରେ ବା ପ୍ରଜାଙ୍କ ସହିତ ସହାନୁଭୂତି ପ୍ରଦର୍ଶନ କଲେ ମୁକ୍ତ ଭାବରେ ପ୍ରଯୁକ୍ତ ହେଉଥିଲା । କନକାର ୬୪ ପ୍ରକାର ବେ-ଆଇନ କର ଓ ଅନ୍ୟାନ୍ୟ ଅତ୍ୟାଚାର ବର୍ଣ୍ଣନା କରିଥିବା 'ଦୁଃଖିନୀ କନକା' ନାମକ ପୁସ୍ତିକାକୁ ସରକାର ବାଜ୍ୟାପ୍ତ କରିଦେଲେ ।

ଏହି କେତେ ବର୍ଷ ପୂର୍ବେ ଓଡ଼ିଶାର ଶାସନନୀତି ଏହିପରି ଭାବରେ ପରିଚାଳିତ ହୋଇଥିଲା ଓ ଏହିଥିରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ କେତେଜଣ ମାତ୍ର କର୍ମୀ ନିଜ ଜୀବନକୁ ହାତମୁଠାରେ ରଖି ଅଗ୍ରସର ହୋଇଥିଲେ ।

ଏଣେ ହାଇକୋର୍ଟ ଘୋଷଣା ଯେ କନକା ଆନ୍ଦୋଳନରେ ରାଜଦ୍ରୋହ କିଛି ନାହିଁ । ତେଣେ ଭଦ୍ରଖର ସାମନ୍ତ ଭାଗବତପ୍ରସାଦ ମହାପାତ୍ର ଲାଟ ସଭାରେ କନକା ଅତ୍ୟାଚାର ପ୍ରଶ୍ନ ଉଠାଇବା ଫଳରେ ସରକାରଙ୍କର ନୀତି ଧୀରେ ଧୀରେ ପରିବର୍ତ୍ତିତ ହେଲା । କିନ୍ତୁ ସେ ସମୟରେ ଯେଉଁମାନେ ଏତେ ବେ-ଆଇନ ଅତ୍ୟାଚାର କରିଥିଲେ, ସେମାନଙ୍କର ଆଚରଣ ଅନୁସନ୍ଧାନ ହେଲା ନାହିଁ କି ସେମାନେ କିଛି ଦଣ୍ଡ ପାଇଲେ ନାହିଁ ।

## ନଅ

## ସାଧାରଣ ନିର୍ଯ୍ୟାତନା

ଓଡ଼ିଶାର ରାଜକର୍ମଚାରୀମାନେ ବୋଧହୁଏ ସେମାନଙ୍କ ପାଦ ବୁଝୁଥିଲେ । କାରଣ ଯେଉଁ ମୁଖ୍ୟ ବ୍ୟକ୍ତିମାନେ କନିକା ଅତ୍ୟାଚାର ଓ ଘରପୋଡ଼ ବ୍ୟାପାରକୁ ପଦାରେ ପକାଇ ଦେବା-ପାଇଁ ଓ ଏ ଉପ୍ଲବାଦ୍ଧ କାଣ୍ଡର କୌଣସି ପ୍ରକାର ପ୍ରତିରୋଧ କରିବା ପାଇଁ ଚେଷ୍ଟା କରୁଥିଲେ, ସେମାନଙ୍କୁ ସମସ୍ତଙ୍କୁ ଧରି ହଠାତ୍ ଜେଲ ଦେଇଦିଆଗଲା । ଏକାଥରକେ ପ୍ରାଦେଶିକ ମହାସଭାର ସଭାପତି ପଣ୍ଡିତ ଗୋପବନ୍ଧୁ ଦାଶ, ସମ୍ପାଦକ ଶ୍ରୀ ଭଗୀରଥି ମହାପାତ୍ର, ଡାକ୍ତର ଏକରାମ ରସୁଲ, ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ, ପଣ୍ଡିତ ନୀଳକଣ୍ଠ ଦାଶଙ୍କୁ ଧରି ନେଇ କାରାବନ୍ଧ କରି ଦିଆଗଲା । ଶ୍ରୀଯୁକ୍ତ ଯଦୁମଣି ମଙ୍ଗରାଜ, ଶ୍ରୀ ଗୋବିନ୍ଦଚନ୍ଦ୍ର ମିଶ୍ର, ପଣ୍ଡିତ ଅନନ୍ତ ମିଶ୍ର ଓ ବାବାଜୀ ରାମଦାସଙ୍କୁ କାର୍ଯ୍ୟବିଧି ଆଇନ ୧୦୮ ଦଫା ଅନୁସାରେ ଜେଲରେ ରଖାଗଲା । ଏମାନେ ସମସ୍ତେ ମୁଖ୍ୟ କର୍ମୀଥିଲେ । ଏମାନଙ୍କ ବିରୋଧରେ କନିକା ପ୍ରଜାଙ୍କ ପ୍ରତି ସହାନୁଭୂତି ମଧ୍ୟ ଗୋଟିଏ ଅଭିଯୋଗ ଥିଲା । କାର୍ଯ୍ୟତଃ ଅସହଯୋଗ ଆନ୍ଦୋଳନଠାରୁ କନିକା ବିଷୟ ବେଶୀ ରାଜଦ୍ରୋହସୂଚକ ହୋଇଗଲା । ଯାହାହେଉ ଯେତେବେଳେ

ଓଡ଼ିଶାରେ ଘରପୋଡ଼ି ଓ କଟକରେ ତାଣ୍ଡବ ଲୀଳା ଚାଲିଥାଏ ସେତିକବେଳେ ମହାତ୍ମାଜୀ ବମ୍ବେ ଲିରେ ଚୌରିଚୌରା ହିଂସା କାଣ୍ଡଯୋଗୁଁ ସତ୍ୟାଗ୍ରହ ବନ୍ଦ କରିଦେଲେ । ସେତେବେଳେ ସବୁ ନେତା ଓ ମୁଖ୍ୟ କର୍ମୀ ଜେଲରେ । ଲେଖକ ଓଡ଼ିଶାରେ ପ୍ରାୟ ଏକାଥିଲେ । ଏହା ନିଶ୍ଚିତ ଯେ ବମ୍ବେ ଲିରେ ସତ୍ୟାଗ୍ରହ ବନ୍ଦ ହୋଇ ନଥିଲେ ମଧ୍ୟ ଓଡ଼ିଶାରେ ଲେଖକ କିଛି କରିପାରି ନଥାନ୍ତା । ମାତ୍ର ତଥାପି ଲେଖକର ମନେହେଲା ଯେପରି ମହାତ୍ମା ଜୀ ଦେଶକୁ ଏତେ ତ୍ୟାଗ ଓ ନିର୍ଯ୍ୟାତନା ପରେ ସମୁଦ୍ରରେ ଛାଡ଼ିଦେଇ ଚାଲିଗଲେ । ବମ୍ବେ ଲି ସିଦ୍ଧାନ୍ତକୁ ବିଚାର କରିବା ପାଇଁ ଦିଲ୍ଲୀରେ ଯେଉଁ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ହୋଇଥିଲା, ସେଥିରେ ଯୋଗଦେବା ପାଇଁ ଲେଖକ ଯାଇଥିଲା । ଲେଖକର ମନେ ଅଛି ସେତେବେଳେ ମହାତ୍ମାଙ୍କ ପ୍ରତି କି ବିରକ୍ତି ଭାବ ତା'ର ଆସୁଥିଲା । ମାତ୍ର ଦିଲ୍ଲୀରେ ମହାତ୍ମାଙ୍କ କଥା ଶୁଣି ଲେଖକର ସନ୍ଦେହ ଚାଲିଗଲା । ଲେଖକ ବୁଝି ପାରିଲା ଯେ ସତ୍ୟାଗ୍ରହ ବନ୍ଦ କରିବା ଅତି ଠିକ୍ ହୋଇଛି । କ୍ଷୁଦ୍ରମନର ଏହିପରି ଚଞ୍ଚଳତା । କିଛିଦିନ ପରେ ମହାତ୍ମା ଗାନ୍ଧୀ ଧରାହୋଇ ୬ବର୍ଷ ପାଇଁ ଜେଲ ଗଲେ । ଦେଶରେ ହତାଶର ଛାୟା ଘେରିଗଲା । ବାଟ କୁଆଡ଼େ ? ସମସ୍ତଙ୍କ ମୁହଁରେ ଏହି ପ୍ରଶ୍ନ । ମହାତ୍ମାଙ୍କ ଧରା ହେବା ପରେ ପରେ ଓଡ଼ିଶାର ଅସହଯୋଗୀ ଆଇନ ବ୍ୟବସାୟୀମାନେ ବଡ଼ ଅପମାନ-ଜନକ ଅବସ୍ଥାରେ ପୁଣି ବ୍ୟବସାୟ ଆରମ୍ଭ କଲେ । ଏମ୍. ଏ. ଓକିଲାତି ପଢ଼ା ଛାଡ଼ିଥିବା ଅଧିକାଂଶ ଛାତ୍ର ମହାସଭାର କାମ ଛାଡ଼ିଦେଇ ଚାଲିଗଲେ । ବାସ୍ତବିକ ସେମାନଙ୍କ ମଧ୍ୟରୁ କେବଳ ଶ୍ରୀଯୁକ୍ତ ନନ୍ଦକିଶୋର ଦାସ ଏମ୍.ଏ. ବର୍ତ୍ତମାନ ସୁଦ୍ଧା ଦରିଦ୍ରତା

ବ୍ରତ ଧରି ଦେଶ ସେବାରେ ଅଛନ୍ତି । ଅନ୍ୟମାନେ ନିଜ ନିଜ ରାସ୍ତା ଧରି ଗଲେଣି । ସେତେବେଳେ ମହାତ୍ମାଙ୍କୁ ଧରି ହୋଇ ଜେଲଯିବା କର୍ମୀମାନଙ୍କ ନିଷ୍ଠା ପରୀକ୍ଷା ପାଇଁ ଦୈବ ଅଭିପ୍ରେତ ଥିଲାପରି ଜଣାପଡ଼ିଲା । ଦେଶର ଅବସ୍ଥା ବିବେଚନା ପାଇଁ ଲକ୍ଷ୍ନୌ ଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଏକ ବୈଠକ ବସିଲା । ସେଥିରେ ଓଡ଼ିଶାରୁ ଶ୍ରୀ ନିରଞ୍ଜନ ପଟ୍ଟନାୟକ ଓ ଲେଖକ ଯାଇଥିଲେ । ଏମାନେ ସେଠାରେ ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ସହିତ ଦେଖାକରି ଘରପୋଡ଼ି ଓ କନିକା ଅତ୍ୟାଚାର ବିଷୟ କହିଥିଲେ । ପଣ୍ଡିତଜୀ ଖୁବ୍ ମନଦେଇ ସବୁ ଶୁଣି ବଡ଼ ସହାନୁଭୂତି ପ୍ରକାଶ କରିଥିଲେ । ସେ ଓଡ଼ିଶା ଆସିବେ ବୋଲି କହିଲେ । ମୁଁ ଯାଇ ସମସ୍ତ ତଦନ୍ତ କରିବି ଏକଥା ତାଙ୍କ ମୁହଁରୁ ଶୁଣି ମନରେ ବଡ଼ ଆଶା ଆସିଲା । କନିକା ଅତ୍ୟାଚାର ବିଷୟରେ ସଭା କରିବାକୁ ମନା ହୋଇଥିବା ୧୪୪ ଧାରା ଆଇନ ଅମାନ୍ୟ କରିବା ପାଇଁ ପଣ୍ଡିତଜୀ ଓଡ଼ିଶା ଆସିବେ ବୋଲି ଜବାବ ଦେଲେ । ନିରଞ୍ଜନ ବାବୁ ଓ ଲେଖକ ଆଶ୍ୱସ୍ତ ହୋଇ ପଣ୍ଡିତଜୀଙ୍କର ଓଡ଼ିଶା ଗସ୍ତ ପାଇଁ ଆୟୋଜନ କରିବା ପାଇଁ ତରତର ହୋଇ ଲକ୍ଷ୍ନୌରୁ ଆସିଲେ; କିନ୍ତୁ ବାଲେଶ୍ୱର ପହଞ୍ଚିବା ମାତ୍ରକେ ଲେଖକ ଗିରଫଦାର ହୋଇ ବର୍ଷକ ପାଇଁ ଜେଲଗଲା । ପଣ୍ଡିତଜୀଙ୍କ ସଙ୍ଗରେ କେହି ଚିଠିପତ୍ର କାରବାର କଲେ ନାହିଁ । ଫଳରେ ସେ ଆସି ପାରିଲେ ନାହିଁ । ଓଡ଼ିଶାର ନିର୍ଯ୍ୟାତନା ଅପ୍ରତିହତ ଭାବରେ ଗଡ଼ିଚାଲିଲା । ଏ ଗଡ଼ ଆପେ ଆପେ ଥକି ପଡ଼ିଯାଇ ବନ୍ଦ ହେଲା । ମାତ୍ର ଦେଶ ସେଥିରେ ଦବିଗଲା କି ?

## ଦଶ

ଅତିଶୀଘ୍ର ମହାସଭାକୁ ଗୃହବିବାଦ ଘାରିଗଲା । ହିନ୍ଦୁ ମୁସଲମାନ ବିବାଦ, ଲୀଗ ସଭାକୁ ଯିବେ କି ନାହିଁ ସେଥିପାଇଁ ବିବାଦ ଏହିପରି ଲାଗିଲା । ସ୍କୁଲ କଲେଜ ଛାଡ଼ି ଯେଉଁମାନେ କାମ କରୁଥିଲେ ସେମାନେ ନିଜ ନିଜ ଉପରେ ନିର୍ଭର କରି ପଡ଼ି ରହିଲେ । ଉପରେ ଯେଉଁମାନେ ରହିଲେ ସେମାନେ ଏମାନଙ୍କ କଥା ବୁଝିଲେ ନାହିଁ । କର୍ମୀମାନେ ରହନ୍ତୁ ବା ଯାଆନ୍ତୁ କେହି ଭାବିଲେ ନାହିଁ । ମହାସଭାର ଅନୁଷ୍ଠାନଟି ଗୋଳମାଳିଆ ଧରିଗଲା । ଅହିଂସା ଫଳରେ ଯେ ଶକ୍ତି ଜାଗରୁକ ହେଲା ସେ ଭ୍ରାତୃ ବିବାଦ ଆକାର ଧାରଣ କଲା । ସମୁଦାୟ ଆନ୍ଦୋଳନର କର୍ଣ୍ଣଧାର କେହି ରହିଲେ ନାହିଁ । ଯେଉଁମାନଙ୍କୁ ଲୋକେ ମହାତ୍ମା ଗାନ୍ଧୀଙ୍କ ଡାହାଣ ହାତ ବୋଲି ଭାବୁଥିଲେ ସେହିମାନେହିଁ ପ୍ରଥମେ ବିଦ୍ରୋହ ଆରମ୍ଭ କଲେ । ତଥାପି ଅହିଂସାର କାମ ଧୀରେ ଧୀରେ ଲୋକଙ୍କ ଭିତରେ ଚାଲିଥିଲା । ତଳ କର୍ମୀମାନେ ନିଜ ନିଜର ମସ୍ତିଷ୍କ ଖର୍ଚ୍ଚ କରି ଲୋକଙ୍କୁ ବୁଝାଇବାରେ ଲାଗିଲେ ଯେ ଏ ଭ୍ରାତୃବିବାଦ କିଛି ନୁହେଁ । ଓଡ଼ିଶାର କର୍ମୀମାନେ ବର୍ତ୍ତମାନ ସୁଦ୍ଧା ରାଜନୈତିକ କ୍ଷେତ୍ରରେ ବିବାଦ କଅଣ ଜାଣି ନ ଥିଲେ । ମହାତ୍ମା ଗାନ୍ଧୀ ଓ କଂଗ୍ରେସ ଯାହା କହୁଥିଲେ ସେମାନେ ତାହା କରି ଯାଉଥିଲେ । ଗାନ୍ଧୀ ଓ କଂଗ୍ରେସ ଭିତରେ କୌଣସି

ସ୍ୱବାଦ ନଥିଲା । ତେଣୁ ଅସହଯୋଗ ସମୟରେ ଯେଉଁ ସବୁ ଆଶ୍ରମ ଖୋଲି ହୋଇଥିଲା ସେ ସବୁର ମୁଖ୍ୟ କର୍ମୀମାନେ କାରାରୁଦ୍ଧ ଥିଲେ ମଧ୍ୟ ଚାଲିଲା, ନେତାମାନଙ୍କ ସ୍ୱବାଦ ଯୋଗେ ବନ୍ଦ ହେଲାନାହିଁ ।

୧୯୨୨ ସାଲ ଶେଷ ଆଡ଼କୁ ବାଲେଶ୍ୱର ଜିଲ୍ଲାର ବନ୍ଦୋବସ୍ତ ବନ୍ଦ ପାଇଁ ଏକ ଗୁରୁତର ଆନ୍ଦୋଳନ ହୋଇଥିଲା । ଆଇନ ଅନୁସାରେ ୩୦ ବର୍ଷରେ ଥରେ ବନ୍ଦୋବସ୍ତ ହେବାର କଥା । ଲୋକେ ଏ ବନ୍ଦୋବସ୍ତକୁ ସୁଖ ପାଆନ୍ତି ନାହିଁ । କାରଣ ବନ୍ଦୋବସ୍ତ କର୍ମଚାରୀମାନେ ବଡ଼ ଜୁଲମ କରିବା କଥା ଲୋକେ ଜାଣନ୍ତି । ଆଉ ମଧ୍ୟ ବନ୍ଦୋବସ୍ତରେ ଖଜଣା ବଢ଼ିବା କଥା ସରକାର ଘୋଷଣା କରି ସାରିଥିଲେ । ପୁଣି ଠିକ୍ ଧାନକଟା ସମୟରେ ବନ୍ଦୋବସ୍ତ କାମ ଆରମ୍ଭ ହେଲା । ଏଣେ ଲୋକ ଫସଲ ଉଠାଇବେ ନା ବନ୍ଦୋବସ୍ତ କେମ୍ପରେ ହାଜର ହେବେ ଏଥିପାଇଁ ଲୋକେ ଉତ୍ତ୍ୟକ୍ତ ହେଲେ । ଲୋକେ ବନ୍ଦୋବସ୍ତକୁ ବର୍ଜନ କରି-ବାକୁ ସ୍ଥିର କଲେ । ମପାମପିରେ ସାହାଯ୍ୟ କରିବାପାଇଁ ଗ୍ରାମ-ବାସୀଙ୍କ ଉପରେ ନୋଟିସ ଜାରି ହେଲା । ଏଣେ ବାଲେଶ୍ୱର ଆଶ୍ରମରୁ ନୋଟିସ ବାହାରିଲା ଯେ କେହି ଯାଅନାହିଁ । ବନ୍ଦୋବସ୍ତ ବର୍ଜନ ଏପରି ଆକାର ଧାରଣକଲା ଯେ ଗାଁରେ ଅମିନ ଓ ବନ୍ଦୋବସ୍ତ କର୍ମଚାରୀମାନଙ୍କୁ ରହିବାକୁ ଜାଗା ସୁଦ୍ଧା କେହି ଦେଲେ ନାହିଁ । ନଖାଇ ନପିଇ ଉପାସେ ପଡ଼ି ପଳାଇ ଆସିଲେ । ଗାଁ ଗାଁ ୧୪୪ ନୋଟିସ ଜାରି ରହିଲା । ପୁଣି ଏକ ନିର୍ଯାତନାର ଲମ୍ବା ଅଧ୍ୟାୟ ଚାଲିବାର ସୂଚନା ମିଳିଲା । ମାତ୍ର ଏଣେ ଜମିଦାରମାନେ ବନ୍ଦୋବସ୍ତକୁ ପସନ୍ଦ କରୁ ନଥିଲେ କାରଣ ସେମାନଙ୍କର ଜମା

ବଢ଼ିଗିବ । ବାଲେଶ୍ୱର ଜମିଦାର ସଭା ଶ୍ରୀଯୁକ୍ତ ନରେନ୍ଦ୍ରନାଥ ସର୍କାରଙ୍କ ନେତୃତ୍ୱରେ ସରକାରଙ୍କ ଦମନ ନୀତିର ତୀବ୍ର ପ୍ରତିବାଦ କଲେ । ସରକାର ଜମିଦାର ସଭାକୁ ଅସହଯୋଗୀଙ୍କ ବନ୍ଧୁ ବୋଲି କନ୍ହ ଆଖି ଦେଖାଇ ଥିଲେ । ମାତ୍ର ଆନନ୍ଦର ବିଷୟ ଜମିଦାର ସଭା ଏଥିରେ ଭୀତ ନହୋଇ ନିର୍ଭୀକ ଭାବରେ ଦମନ ନୀତିର ପ୍ରତିବାଦ କଲେ । ଏହି ଅବସ୍ଥାରେ ସରକାର ଏକ ମହା ଜଞ୍ଜାଳରେ ପଡ଼ିଥାନ୍ତି । ଏହି ସମୟରେ ସେତେବେଳକାର ଏକମାତ୍ର ଉଦାର ହୃଦୟ କଂଗ୍ରେସ ବାହାରରେ ପରିଚିତ ଦେଶସେବୀ ଭଦ୍ରଖର ସାମନ୍ତ ଭଗବତପ୍ରସାଦ ମହାପାତ୍ର ଲାଟ ସଭାରେ ପ୍ରସ୍ତାବ କଲେ କି ବନ୍ଦୋବସ୍ତ ବର୍ଷକ ପାଇଁ ମୂଲତବି ରଖାଯାଉ । ସରକାର ଏ ପ୍ରସ୍ତାବକୁ ଗ୍ରହଣ କରି ବର୍ଷେ ବନ୍ଦୋବସ୍ତକୁ ଗଡ଼ାଇ ଦେଲେ । ଏହି ଆନ୍ଦୋଳନରେ ବାଲେଶ୍ୱର ଆଶ୍ରମର ଶ୍ରୀ ମଥୁରାମୋହନ ବେହେରା ବର୍ଷେ ଜେଲ ଯାଇଥିଲେ । ସେହି ସମୟରେ ଓଡ଼ିଶାର ଭୂରାଜସ୍ୱ ନୀତି ବିରୋଧରେ ଆନ୍ଦୋଳନ କରିଥିଲେ ଭଲ ହୋଇ ଥାନ୍ତା । ମାତ୍ର ସେପରି ଅଭିଜ୍ଞ ପରିଚାଳକ କେହି ନଥିଲେ; ଯା'ହେଉ ଲୋକେ ନିଜ ଶକ୍ତିର କିଞ୍ଚିତ୍ ପରିଚୟ ପାଇଲେ ।

ବର୍ଦ୍ଦୋଲିର ବନ୍ଦୋବସ୍ତ ସତ୍ୟାଗ୍ରହ ବେଳେ ପୋଲିସ ଓ ରାଜସ୍ୱ ଆଦାୟ କର୍ମଚାରୀଙ୍କ ବର୍ଜ୍ଜନ ସୁବିଦିତ ହେଲା । ଓଡ଼ିଶାର ଲୋକେ ମଧ୍ୟ ଗର୍ବ କରି ପାରନ୍ତି ଯେ ସେମାନେ ତା'ର ବହୁ ପୂର୍ବରୁ ଏ ବର୍ଜ୍ଜନ ନୀତି ପ୍ରୟୋଗ କରି କିଛି ଫଳ ପାଇଥିଲେ । ବର୍ଦ୍ଦୋଲି ବର୍ଜ୍ଜନ ପରେ ମହାତ୍ମାଗାନ୍ଧି ବାରମ୍ବାର ସାବଧାନ କରିଛନ୍ତି 'ଏ ବର୍ଜ୍ଜନ ସମ୍ପୂର୍ଣ୍ଣ ହିଂସା ବର୍ଜିତ ହେବା ଉଚିତ' ।

## ଏଗାର

ଉପରୋକ୍ତ ବୃତ୍ତାନ୍ତରୁ ଜଣାଯିବ ଯେ ପ୍ରଥମ ଅବସ୍ଥାରେ ନେତାମାନଙ୍କ ବିବାଦ ଚାଲିଥିଲେ ସୁଦ୍ଧା ଅସହଯୋଗର ପ୍ରଗତି ପ୍ରୟାସ ପୂର୍ଣ୍ଣମାତ୍ରାରେ ଥିଲା । ମାତ୍ର ଧୀରେ ଧୀରେ ଏଥିପ୍ରତି ସଂଘର୍ଷ ବୃଦ୍ଧି ପାଇବାରେ ଲାଗିଲା । ଗୟା କଂଗ୍ରେସରେ ଅହିଂସା ଅସହଯୋଗ ଜଡ଼ିତଗଲା କାରଣ ସେତେବେଳକୁ ଏହାର ଗତିରେ ସଂଘର୍ଷ ବିଶେଷ ଘଟି ନଥିଲା । ମାତ୍ର ପରେ ନିତାନ୍ତ ଆପତ୍ତିଜନକ ଉପାୟରେ ସଂଘର୍ଷକୁ ବଢ଼ାଇ ଦିଆଗଲା । ଜନସାଧାରଣ ଓ ପ୍ରଧାନ ପ୍ରଧାନ କର୍ମୀଙ୍କ ମନୋଭାବକୁ ଭ୍ରୂକ୍ଷେପ କରାଗଲା ନାହିଁ । କେତୋଟି ମାତ୍ର ନିଷ୍ଠାବାନ୍ ନେତାଙ୍କୁ ଯେଉଁ ଯେତିକ ଶାନ୍ତ ଓ ଅଧିକ ତ୍ୟାଗ ସ୍ୱୀକାର କରିବାକୁ ଅପ୍ରସ୍ତୁତ ସେହିମାନେ ବେଶୀ ସଂଘର୍ଷ ଆରମ୍ଭ କଲେ । ଦିନକୁଦିନ ଅବସ୍ଥା ଖରାପ ହେଲା । ନିଖିଳ ଭାରତ କଂଗ୍ରେସ କମିଟି ସଭାରେ ନେତାମାନେ ଇତର ଲୋକଙ୍କ ପରି ଗାଳି ଦିଆଦେଇ ହେଲେ । ଏସବୁ ବୃତ୍ତାନ୍ତ ଧୀରେ ଧୀରେ

ଜନସାଧାରଣଙ୍କଠାରେ ପଡୁଥିଲା । ସେମାନଙ୍କ ଉତ୍ସାହରେ ବାଧା ପଡୁଥିଲା । ସେମାନେ କ୍ରମଶଃ କଂଗ୍ରେସକୁ ପୂର୍ବ ଚକ୍ଷୁରେ ଦେଖିଲେ ନାହିଁ । ଓଡ଼ିଶାର ଜନସାଧାରଣ ତଥା କର୍ମୀ ଏକ ବଡ଼ ଅଡୁଆରେ ପଡ଼ିଲେ । ଲେଖକ ଯେତେବେଳେ ଜେଲରୁ ଖଲାସ ହେଲା ସେତେବେଳେ ଓଡ଼ିଶାରେ ଗାନ୍ଧୀ ମାତ୍ର ପ୍ରତି ପୂର୍ଣ୍ଣ ବିଶ୍ୱାସ ଥିଲା । ମାତ୍ର ନେତା କେହି ନାହାନ୍ତି, ଲୋକେ ପଣ୍ଡିତ ମୋତିଲାଲ, ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ, ଏହିମାନଙ୍କ ନାମ ଶୁଣିଛନ୍ତି, ଏମାନେ ଲୋଟ ସଭାବାଦୀ । ବ୍ରଜଗୋପାଳ ବୃଣ୍ଣଙ୍କ ନାମ ଲୋକେ ଶୁଣି ନଥିଲେ । ସେ ଗାନ୍ଧୀମତବାଦକୁ ଦୃଢ଼କରି ଧରିଥିଲେ ମଧ୍ୟ ଲୋକଙ୍କ ଠାରେ ତାଙ୍କର ପ୍ରଭାବ ପଡୁ ନଥିଲା । ଫଳରେ ଓଡ଼ିଶା କଂଗ୍ରେସ ମହଲରେ ପୂର୍ଣ୍ଣ ଅରାଜକତା ପଡୁଥିଲା । ଏହି ଅବସ୍ଥାରେ ଦିନାକେତେ ଗଲା । ସ୍ୱର ଉଠିଲା ଯେ କିଛି କାର୍ଯ୍ୟକ୍ରମ ଦେଶ ଆଗରେ ନାହିଁ । ଶେଷରେ ଦିଲ୍ଲୀଠାରେ ମହାସଭାର ବିଶେଷ ଅଧିବେଶନରେ ଶେଷ ସିଦ୍ଧାନ୍ତ ହୋଇଗଲା । ଲୋଟ ସଭାକୁ ଯିବା କଥା ମଞ୍ଜୁର ହେଲା । ପୁଣି ମହାତ୍ମା ଗାନ୍ଧୀ ଜେଲ୍‌ରୁ ଫେରିଆସି ଅସହଯୋଗକୁ ସ୍ଥଗିତ କଲେ । ଲୋଟ ସଭା ଯିବା ଯେ ଏକ ପ୍ରକାର ଅସହଯୋଗ ଏକଥା ପ୍ରକାଶ କରିବାକୁ ବୁଦ୍ଧିଆ ଓକିଲ ବାରିଷ୍ଟରମାନେ ଯେ ମସ୍ତିଷ୍କ ଖରଚ କରୁଥିଲେ ସେଥିରୁ ସେମାନେ କ୍ଷାନ୍ତ ହେଲେ । ଦେଶରେ ମଧ୍ୟ ଶାନ୍ତି ଆସିଲା । କେତେଜଣ ନିଷ୍ଠାପର କର୍ମୀଙ୍କ ସହ ଗାନ୍ଧୀଜୀ ପଛକୁ ହଟିଗଲେ ।

ଏହିଠାରେ ଏହା ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶା କଂଗ୍ରେସରେ ପୂର୍ଣ୍ଣଭାବରେ ଯୋଗଦେଇ ଆସୁଥିଲା । ଗୟା କଂଗ୍ରେସକୁ ବହୁ ସଂଖ୍ୟାରେ ପ୍ରତିନିଧି ଓଡ଼ିଶାରୁ ଯାଇଥିଲେ ଓ

ସମସ୍ତେ ଲୁଣସତ୍ୟାଗ୍ରହ ଯିବା ବିରୋଧରେ ମତ ଦେଇଥିଲେ । ଦିଲ୍ଲୀର ବିଶେଷ ଅଧିବେଶନକୁ ମଧ୍ୟ ଓଡ଼ିଶାରୁ ପ୍ରତିନିଧି ଯାଇଥିଲେ । କଂଗ୍ରେସରେ ଯୋଗ ଦେବାକୁ ହେବ ଏହାହିଁ ଓଡ଼ିଶାର ଦୃଢ଼ ଧାରଣା ହୋଇଗଲାଣି । ଯେତେବେଳେ ଗାନ୍ଧୀ ନୀତି ଓ କଂଗ୍ରେସ ମଧ୍ୟରେ ମତଭେଦ ଘଟିଲା, ସେତେବେଳେ ଓଡ଼ିଶା ଏକ ବିଷମ ସନ୍ଧିରେ ପଡ଼ିଲା । ଓଡ଼ିଶାର ମନଟି ଥିଲା ଗାନ୍ଧୀନୀତି ଅନୁସାରେ କାମ କରିବା ମାତ୍ର କଂଗ୍ରେସର ଲୁଣସତ୍ୟାଗ୍ରହ ନିର୍ବାଚନ କାର୍ଯ୍ୟକ୍ରମରେ ହୃଦୟର ସମ୍ମତି ଲଗିଲେ ଗାନ୍ଧୀନୀତିକୁ ଛାଡ଼ିବାକୁ ହେବ, ଏଣେ ଗାନ୍ଧୀନୀତିକୁ ଧରିବସିଲେ କଂଗ୍ରେସକୁ ଛାଡ଼ିବାକୁ ହେବ । ଓଡ଼ିଶା ନୂଆ ହୋଇ କଂଗ୍ରେସରେ ଯୋଗ ଦେଇଥାଏ । ବିଶେଷତଃ ଜନକା ଅତ୍ୟାଚାର ଓ ଘରପୋଡ଼ି ସମର୍ଥନ କରିଥିବା ବା ଅନ୍ତତଃ ସେ ସମୟରେ ମୂକ ହୋଇ ରହିଥିବା ଲୋକଗୁଡ଼ାକ ଲୁଣ ସତ୍ୟାଗ୍ରହକୁ ଚାଲିଯିବେ ଏ କଥା ମଧ୍ୟ ସହ୍ୟ ହେଉ ନଥାଏ ।

ଗାନ୍ଧୀନୀତିବାଦୀ ଓ ଲୁଣ ସତ୍ୟାଗ୍ରହବାଦୀଙ୍କର କେଉଁଠି ବିବାଦ ନଥିଲା ଅର୍ଥାତ୍ ଜିଲ୍ଲାବୋର୍ଡ଼, ମ୍ୟୁନିସିପାଲିଟି ନିର୍ବାଚନରେ କଂଗ୍ରେସ ଲୋକେ ପଶିଗଲେ । କୌଣସି ଦ୍ୱିଧା ବୋଧକଲେ ନାହିଁ । ମାତ୍ର ଲୁଣସତ୍ୟାଗ୍ରହ ନିର୍ବାଚନ ବେଳେ ଗୋଳମାଳ ଚାଲିଲା । ପଣ୍ଡିତ ନୀଳକଣ୍ଠ ଦାଶ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ଲୁଣସତ୍ୟାଗ୍ରହ ଯିବା ପକ୍ଷରେ ମତ ପ୍ରକାଶ କଲେ । ଲେଖକ ହଜାରିବାଗ ଜେଲ୍‌ରେ ଯେତେବେଳେ ପଣ୍ଡିତ ଗୋପବନ୍ଧୁଙ୍କ ସହିତ ଦେଖା କରିଥିଲା, ସେତେବେଳେ ପଣ୍ଡିତଜୀ ଲୁଣସତ୍ୟାଗ୍ରହକୁ ଭଲଲୋକ ପଠାଇବା ଦରକାର ବୋଲି ମତ ଦେଇଥିଲେ; ମାତ୍ର ସେ ନିଜେ ଯିବେ ନାହିଁ ବୋଲି ମନା କରିଥିଲେ । ପଣ୍ଡିତ ନୀଳକଣ୍ଠ ବହୁଦିନ

ଜେଲ୍‌ରେ ପଣ୍ଡିତ ଗୋପବନ୍ଧୁଙ୍କ ସଙ୍ଗ ଥିଲେ । ନୀଳକଣ୍ଠବାବୁ ଜେଲ୍‌ରୁ ଖଲାସ ହେବା ମାତ୍ରକେ ଲାଟସଭା ପକ୍ଷରେ ନିଜର ମତ ବ୍ୟକ୍ତ କରିଥିଲେ । ଏହି ଲାଟସଭା ଯିବା ପ୍ରଶ୍ନ ନବ ଗଠିତ ଉତ୍କଳ ପ୍ରାଦେଶିକ ସମ୍ମିଳନୀର ପ୍ରଥମ ଅଧିବେଶନରେ କଟକରେ ଆଲୋଚିତ ହୋଇଥିଲା । ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ ସଭାପତି ହୋଇଥିଲେ । ଏହି ସମ୍ମିଳନୀ ମଣ୍ଡପରେ ମଧୁବାବୁ ମହାସଭାର ସଭ୍ୟ ହୋଇ ବକ୍ତୃତା ଦେଇଥିଲେ । ପଣ୍ଡିତ ଗୋପବନ୍ଧୁ ଓ ଶ୍ରୀଯୁକ୍ତ ଭଗୀରଥି ମହାପାତ୍ର ହଜାରୀବାଗ ଜେଲରୁ ଖଲାସ ହୋଇ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ଖୁବ୍ ଉତ୍ସାହରେ ଓଡ଼ିଶାର ଚାରିଆଡ଼ୁ ପ୍ରାୟ ଦଶହଜାର ଲୋକ ରୁଣ୍ଡ ହୋଇଥିଲେ । ପୁରୁଣା ସମ୍ମିଳନୀର ବହୁନେତା ମଧ୍ୟ ଉପସ୍ଥିତ ଥିଲେ । ପଣ୍ଡିତ ଗୋପବନ୍ଧୁ ଲାଟସଭା ଯିବା ସପକ୍ଷରେ ପ୍ରସ୍ତାବ ଆଗତ କରିଥିଲେ । ଅନ୍ୟାନ୍ୟ ଶିକ୍ଷିତ ଭଦ୍ରବ୍ୟକ୍ତିମାନେ ଏହାକୁ ସମର୍ଥନ କରିଥିଲେ । ମାତ୍ର କର୍ମୀମାନେ ଏଥିରେ ବାଧା ଦେଇଥିଲେ । ଫଳରେ ପ୍ରସ୍ତାବ ସମ୍ମିଳନୀ ଦ୍ୱାରା ଅଗ୍ରାହ୍ୟ ହେଲା । କିନ୍ତୁ ମହାତ୍ମା ଜୀନେ ଅସହଯୋଗ ଆନ୍ଦୋଳନକୁ ବେଲଗାଁଓ ମହାସଭାର ଅଧିବେଶନରେ ସ୍ଥଗିତ ରଖିଲାପରେ ଅବସ୍ଥା ବଦଳି ଗଲା । ଓଡ଼ିଶା କର୍ମୀଙ୍କ ଆଗରେ ପ୍ରଶ୍ନ ହେଲା ମହାସଭାର କାର୍ଯ୍ୟକ୍ରମକୁ ପାଳନ କରିବେ କି ନାହିଁ । ଲେଖକ ଆଗରୁ ଲାଟସଭା ବିରୋଧୀ ଥିଲେ ମଧ୍ୟ ସେତେବେଳେ ମନେକଲା ଯେ ମହାସଭାର କାର୍ଯ୍ୟକ୍ରମକୁ କରିବାକୁ ହେବ । ସେତେବେଳକା ଘଟଣା ଗତିରେ ପ୍ରବଳତା ହେଉ ବା ଲେଖକର ଦୁର୍ବଳତା ହେଉ, ସେ ଶେଷରେ ଲାଟସଭା ବ୍ୟାପାରରେ ଯୋଗ ଦେଇଥିଲା । ଯେଉଁ କଂଗ୍ରେସ କର୍ମୀମାନଙ୍କର

ଲୋଟ ସଭାକୁ ଯିବାର ଦକ୍ଷତା ଥିଲା ସେମାନେ ସେଇଥିରେ ମାତିଲେ । ମାତ୍ର ସମସ୍ତଙ୍କର ସେହି ଦିଗରେ ଦକ୍ଷତା ନଥିଲା । ଅଳ୍ପ ଲୋକେ ଲୋଟସଭା ସେବା ରଖିଲେ । ବାକି ସମସ୍ତେ ଛତ୍ରଭଙ୍ଗ ଦେଲେ । ସରକାରୀ ନିର୍ବାଚନ କାର୍ଯ୍ୟକ୍ରମରେ ଅର୍ଥ ଓ ଇଂରାଜୀ ଶିକ୍ଷାର ମହତ୍ତ୍ୱ ତ ବେଶୀ ଏ ସାଧାରଣ କର୍ମୀଙ୍କର ନଥିଲା, ତେଣୁ ଅର୍ଥଶାଳୀ ଓ ଇଂରେଜୀ ଶିକ୍ଷିତ ଲୋକେ ସାଧାରଣ କର୍ମୀଙ୍କଠାରୁ ବେଶୀ ସୁବିଧା ପାଇଲେ । ମହାସଭାର ମାନ ମର୍ଯ୍ୟାଦାଯାକ କର୍ମୀଙ୍କ ଜରିଆରେ ଜିଲ୍ଲାବୋର୍ଡ଼ ଓ ଲୋଟସଭାରେ ପହଞ୍ଚିଲା । କାରଣ ଯେଉଁ କର୍ମୀମାନେ ମହାସଭାର କାମ କରୁଥିଲେ ସେମାନେ ଜିଲ୍ଲାବୋର୍ଡ଼ ଓ ଲୋଟସଭା ଜରିଆରେ ସବୁ କାମକଲେ । ସାଧାରଣ କର୍ମୀ ଏଥିରେ ବଞ୍ଚିତ ହୋଇ ଯେ ଯୁଆଡ଼େ ଗଲେ ।

ନିଖିଳ ଭାରତ ଚର୍ଖାସଂଘର ଶାଖା ସେହି ସମୟରେ ଓଡ଼ିଶାରେ ସ୍ଥାପିତ ହୋଇଥିଲା । ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକ ତାର ଭାର ନେଇ ରହିଲେ । ଏହି କାମରେ କେତେଜଣ କର୍ମୀ ନିଯୁକ୍ତ ହୋଇଥିଲେ ।

ଏହିପରି ବହୁ ଦ୍ୱିଧା ଓ ମତଭେଦ ବାଟେ ୧୯୨୩ ସାଲରୁ ଓଡ଼ିଶାରେ ମହାସଭା ଗଢ଼ିକରି ୧୯୨୬ରେ ପୁରାପୁରି ସରକାରୀ ନିର୍ବାଚନ କାର୍ଯ୍ୟକ୍ରମକୁ ପୂର୍ଣ୍ଣ ଭାବରେ ଧରିଲା ।

## ବାର

ପୂର୍ବରୁ କୁହାଯାଇଛି ଜିଲ୍ଲାବୋର୍ଡ, ମ୍ୟୁନିସିପାଲିଟିରେ ମହାସଭାର ଲୋକେ ବିନା ଦ୍ୱିଧାରେ ପଶିଲେ । ବାଲେଶ୍ୱର, କଟକ ଓ ପୁରୀ ଡିଷ୍ଟ୍ରିକ୍ଟ ଜିଲ୍ଲାବୋର୍ଡ 'କଂଗ୍ରେସ ଲୋକଙ୍କ ଅଧୀନରେ ରହିଲା' । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ କଟକ ଜିଲ୍ଲାବୋର୍ଡ଼ ଚେୟାରମେନ, ଶ୍ରୀ ବନମାଳୀ ଦାସ ପୁରୀରେ ଓ ଲେଖକ ବାଲେଶ୍ୱର ଜିଲ୍ଲାବୋର୍ଡର ଅଧ୍ୟକ୍ଷ ହେଲେ । କଂଗ୍ରେସ ଲୋକେ ଏସବୁ ସରକାରୀ ଅନୁଷ୍ଠାନ ଜରିଆରେ କେତେକ ଭଲ କାମ କଲେ । ସେଠାରେ ଜାତୀୟ ଭାବ ଆଣିଦେଲେ । କ୍ଷମତା ମିଳିଲେ ମହାସଭାର ଲୋକେ ଲୋକଙ୍କର ଯଥାର୍ଥ ଉପକାର କରିପାରନ୍ତି ଏକଥା ପ୍ରମାଣ କଲେ । ମାତ୍ର ଏହାଦ୍ୱାରା ମହାସଭାର ଅନୁଷ୍ଠାନର ପ୍ରତିଷ୍ଠା ବଢ଼ିଲା ନାହିଁ ବରଂ ବାଧା ପାଇଲା । ସରକାରୀ ଅନୁଷ୍ଠାନର ପ୍ରତିଷ୍ଠା ବଢ଼ିଲା । ତା'ପରେ ଜିଲ୍ଲାବୋର୍ଡରେ ପଶିବା ହେଲା କଳାର ସବୁପାଖ । ଏହାର ଶେଷ

ହେଲା ୧୯୨୬ ସାଲ ଲାଟସଭା ନିର୍ବାଚନରେ । ଓଡ଼ିଶାରେ ଲାଟସଭା ନିର୍ବାଚନରେ ମହାସଭାର ଲୋକେ ଆଶ୍ଚର୍ଯ୍ୟ ରକମ ଜିତିଗଲେ । ପ୍ରତି ପକ୍ଷର ପ୍ରଭୂତ ଅର୍ଥ ଓ ବିଶାଳ ପ୍ରତିପତ୍ତିକୁ ମହାସଭାର ଲୋକେ ଚୂର୍ଣ୍ଣ କରିଦେଲେ । ପଣ୍ଡିତ ଗୋପବନ୍ଧୁ ଦାସ ଏ ଦିଗରେ ପ୍ରଭୂତ ଯତ୍ନ କରିଥିଲେ । ସେ ସମସ୍ତଙ୍କୁ ପଠାଇ ଦେଇ ନିଜେ ସେବା କାର୍ଯ୍ୟରେ ନିରତ ରହିଲେ । ନିର୍ବାଚନ ପରେ ପରେ ଯେଉଁ ସିଡ଼ି ଦେଇ ପ୍ରାର୍ଥୀମାନେ ଉଠିଲେ ସେ ସିଡ଼ିର ଖବର କେହି ରଖିଲେ ନାହିଁ । ଜନସାଧାରଣଙ୍କ ଦୃଷ୍ଟି ମହାସଭା ଉପରେ ରହିଲା ନାହିଁ । ମହାସଭାର ଅନୁଷ୍ଠାନମାନ ଧୀରେ ଧୀରେ ଭାଙ୍ଗିବାକୁ ଆରମ୍ଭ କଲା । ପ୍ରଥମେ ଭାଙ୍ଗିଲା ସତ୍ୟବାଦୀର ସେ ପ୍ରତିଷ୍ଠିତ ବିଦ୍ୟାଳୟ । ପଣ୍ଡିତ ନୀଳକଣ୍ଠ ଓ ଅନ୍ୟ ଯେଉଁମାନେ ବିଦ୍ୟାଳୟର ପ୍ରାଣସ୍ୱରୂପ ଥିଲେ ସେମାନେ ଲାଟସଭା କାର୍ଯ୍ୟରେ ବ୍ୟାପୃତ ରହିଲେ । ସେ ଦିଗରେ ଦୃଷ୍ଟି ରହିବାରୁ ଏ ଅନୁଷ୍ଠାନ ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ କମିଯାଇ ଶେଷରେ ଏହା ଉଠିଗଲା । ସତ୍ୟବାଦୀ ବିଦ୍ୟାଳୟକୁ ହରାଇ ଓଡ଼ିଶା ଆଜିସୁଦ୍ଧା ହୀନା ରହିଅଛି ।

ଜଗତସିଂହପୁରର ଅଳକାଶ୍ରମ ଭାଙ୍ଗିଗଲା । ଅଳକାଶ୍ରମର ଆତ୍ମା ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଜିଲ୍ଲାବୋର୍ଡ଼ର କର୍ତ୍ତା ହେଲେ । ସେ ଅନୁଷ୍ଠାନର ମସ୍ତିଷ୍କ ଶ୍ରୀ ଭଗିରଥୀ ମହାପାତ୍ର ନିର୍ବାଚନର ନେତୃତ୍ୱ ନେଲେ । ଅନୁଷ୍ଠାନଟି ପ୍ରତି ଶ୍ରଦ୍ଧା ଓ ବିଶ୍ୱାସ କମିଯିବାରୁ ସେ ଗଲା ।

କଟକ ଆଶ୍ରମ, ବାଲେଶ୍ୱର ଆଶ୍ରମ, ଭଦ୍ରଖ ଆଶ୍ରମ, ସବୁ ଆଶ୍ରମ ଏକବାରେକେ ଉଠିଗଲା । ବାଲେଶ୍ୱର ଆଶ୍ରମରେ

'ପ୍ରଜାତନ୍ତ୍ର' ନାମକ ସମ୍ବାଦପତ୍ର ବାହାରିଲା । ଅସହଯୋଗ ସମୟ୍ରୁ ସ୍ଥାପିତ ଗୋଟିଏ ସୁଦ୍ଧା ଅନୁଷ୍ଠାନ ତିଷ୍ଠିଲା ନାହିଁ ।

ଏସବୁ ଘଟିଲେ ସୁଦ୍ଧା ଜନସାଧାରଣଙ୍କ ଭିତରେ ଯେ ଜାଗରଣ ଆସିଥିଲା, ସେ ଧୀରେ ଧୀରେ ଆପେ ଆପେ ବ୍ୟାପ୍ତ ହେଲା । ଓଡ଼ିଶାର ସାଧାରଣ ଜୀବନ ମଧ୍ୟ ଉନ୍ନତ ହେଲା । ୧୯୫୨ ସାଲରେ ଯେପରି ମନଇଚ୍ଛା ଅତ୍ୟାଚାର ହୋଇ ଚାଲିଗଲା, ତା' ଆଉ ହେବା ସମ୍ଭବ ହେଲାନାହିଁ ।

# ତେର

ପାଠକେ କନିକାର ଅତ୍ୟାଚାର ବିଷୟ ଅବଗତ ଅଛନ୍ତି । କନିକା ପ୍ରଜାମାନେ ସମସ୍ତ ଅତ୍ୟାଚାର ଶେଷରେ ସେମାନଙ୍କ ଜମିଜମାର ସରକାରୀ ବନ୍ଦୋବସ୍ତ ହାସଲ କଲେ । ସରକାରୀ ବନ୍ଦୋବସ୍ତ ଫଳରେ ବହୁପ୍ରକାର ଅନ୍ୟାୟ କର ଉଠିଗଲା । ବେଆଇନ ଭାବରେ ବର୍ଦ୍ଧିତ ହୋଇଥିବା ଜମି ଖଜଣା ମଧ୍ୟ କମାଇ ଦିଆଗଲା । ପ୍ରଜାମାନେ ଅନେକ ସ୍ୱତ୍ତ୍ୱ ସୁବିଧା ପାଇଲେ । ବନ୍ଦୋବସ୍ତ କର୍ମଚାରୀ ବଡ଼ରୁ ଗ୍ଲେଠଯାଏ ସମସ୍ତେ କନିକାରେ ପ୍ରଜାଙ୍କ ପ୍ରତି ହେଉଥିବା ଜୁଲମ ବିଷୟ ସେମାନଙ୍କ ରିପୋର୍ଟରେ ଉଲ୍ଲେଖ କରିଯାଇଛନ୍ତି । ଏପରିକି ସରକାରୀ ରିପୋର୍ଟରେ ମଧ୍ୟ ସେସବୁ ପ୍ରକାଶିତ ହୋଇଛି । ଅବଶ୍ୟ ରାଜ ତରଫରୁ ବରାବର ଉଦ୍ୟମ ହେଉଛି କିପରି ଏ ସରକାରୀ ବନ୍ଦୋବସ୍ତ କାର୍ଯ୍ୟତଃ ରଦ୍ଦ ହୋଇଯିବ । ନାନାପ୍ରକାର ମାଲିମୋକଦ୍ଦମା ପ୍ରଜାଙ୍କ ବିରୋଧରେ କରା ହେଉଅଛି । କେତେକ ସରକାରୀ କର୍ମଚାରୀ ଅର୍ଥ ଓ ପ୍ରତିପତ୍ତି ବଶବର୍ତ୍ତୀ ହୋଇ ପ୍ରଜାଙ୍କ ସ୍ୱାର୍ଥରେ ଆଘାତ ଲଗାଉଛନ୍ତି ।

ମାତ୍ର ମୋଟା ମୋଟି ସରକାର ନିରପେକ୍ଷ ରହିଛନ୍ତି । ପ୍ରଜାମାନେ ମଧ୍ୟ ନିଜ ଗୋଡ଼ରେ ଛିଡ଼ା ହୋଇ ନିଜ ସ୍ୱାର୍ଥ ରକ୍ଷା କରିବାରେ ପୂର୍ଣ୍ଣ ସମର୍ଥ ହେଲେଣି । କନିକା ପ୍ରଜାଙ୍କ ନେତା ଶ୍ରୀଯୁକ୍ତ ଚନ୍ଦ୍ରଧର ବେହେରାଙ୍କୁ ଇଂରେଜ କବିଙ୍କ ଭାଷାରେ 'ଭିଲେଜ୍ ହେମ୍ପଡେନ୍' କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ତାଙ୍କ ତ୍ୟାଗ ଓ ନିଷ୍ଠା ଫଳରେ ପ୍ରଜା ସାଧାରଣଙ୍କର ଶ୍ରଦ୍ଧା ଓ ବିଶ୍ୱାସର ପାତ୍ର ହୋଇ ପାରିଛନ୍ତି । ଏହି ଚନ୍ଦ୍ରଧର ବାବୁ ଓ ତାଙ୍କର ସହକର୍ମୀମାନେ ଏକ ସମୟରେ ରାଜାଦେଶରେ ସମାଜ ଦ୍ୱାରା ପରିବର୍ଜ୍ଜିତ ହୋଇ ରୁଡ଼ ବଢ଼ାଇ ମଇଳା ଲୁଗା ପିନ୍ଧି ବୁଲୁଥିଲେ । କେତେ ମାଡ଼ ଖାଇଛନ୍ତି ତା'ର ସୀମା ନାହିଁ । ମାତ୍ର ବର୍ତ୍ତମାନ ଚକା ଘୂରି ଯାଇଛି । ଆଜି ଏମାନେ ଗ୍ରାମରେ ପ୍ରଜାମାନଙ୍କ ମଧ୍ୟରେ ପ୍ରତିଷ୍ଠାବାନ୍; କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ସରକାର ପୁରାପୁରି ପ୍ରଜାଙ୍କ ପକ୍ଷ ନ ନେଇଛନ୍ତି, ସେତେଦିନ ପର୍ଯ୍ୟନ୍ତ ପ୍ରଜାଙ୍କୁ ସଚେତ ରହିବାକୁ ପଡ଼ିବ ଓ ନିଜ ସ୍ୱାର୍ଥରକ୍ଷା ପାଇଁ ଟଣା ଓଟରାରେ ଲାଗି ରହିବାକୁ ହେବ ।

ଲେଖକ ଏହି କନିକା ପ୍ରଜା ଆନ୍ଦୋଳନ ସହିତ ସମ୍ପୃକ୍ତ ଥିବାରୁ ବହୁପ୍ରକାର ମାଲିମୋକଦ୍ଦମାରେ ପଡ଼ିଥିଲା । ତା'ର ଲାଟସଭା ନିର୍ବାଚନ ରଦ୍ ହୋଇଥିଲା ଓ ଜିଲ୍ଲାବୋର୍ଡ଼ ପରିଚାଳନା ଘେନି ଦୁଇବର୍ଷ କାଳ ଗୋଳମାଳ ଲାଗିଥିଲା ।

ଏହାପରେ ୧୯୨୮ ସାଲରେ ଯେତେବେଳେ ପ୍ରବଳ ବନ୍ୟା ହୋଇ ଓଡ଼ିଶାର ପ୍ରାୟ ୮୦ ହଜାର ଘର ବିବାକ୍ ଭସାଇ ନେଇଥିଲା, ପ୍ରାୟ ୬୦ ମାଇଲ ରେଲଲାଇନ ଭାସି ଯାଇଥିଲା, ଲୋକେ ନିରାଶ୍ରୟ ଓ ନିରନ୍ନ ହୋଇ ହା' ହା'କାର କରୁଥିଲେ

ମହାସଭାର କର୍ମୀମାନେ ସେମାନଙ୍କ ସହାୟ ହୋଇଥିଲେ । ସେମାନେ ଗ୍ରାମ ଗ୍ରାମ ବୁଲି ସାହାଯ୍ୟ ବିତରଣ କରିଥିଲେ । ସେମାନେ ଏକଦିଗରେ ଲୋକଙ୍କ ଦୁଃଖ ଓ ଅନ୍ୟ ଦିଗରେ ସରକାରଙ୍କ ଉଦାସୀନତା ବିରୋଧରେ ଯୁଦ୍ଧ କରିଥିଲେ । ଏ ବିଷୟରେ ଦୀନବନ୍ଧୁ ଆଣ୍ଡ୍ରୁଜ ସାହେବ ତାଙ୍କ 'ଇଣ୍ଡିଆ ଏଣ୍ଡ ସାଇମନ ରିପୋର୍ଟ' ପୁସ୍ତକରେ ଉଲ୍ଲେଖ କରିଅଛନ୍ତି ।

ଏ ସମ୍ପର୍କରେ କେତେକ ଖ୍ରୀଷ୍ଟିଆନ ପାଦ୍ରୀ, ଯେଉଁମାନେ ସମସ୍ତ କଷ୍ଟ ସ୍ୱୀକାର କରି ଓଡ଼ିଶାର ଦୁର୍ଦ୍ଦିନରେ ସହାୟ ହୋଇଥିଲେ ସେମାନଙ୍କ ନାମ ଉଲ୍ଲେଖଯୋଗ୍ୟ । ଠକ୍କର ସାହେବ, ଗେଷ୍ଟ ସାହେବ, ପ୍ରଷ୍ଟ ସାହେବଙ୍କଠାରେ ଓଡ଼ିଶା ଋଣୀ, ଅବଶ୍ୟ ଦୀନବନ୍ଧୁ ଅଣ୍ଡ୍ରୁଜ ଓଡ଼ିଶାର ହୃଦୟ ସମ୍ରାଟ ହୋଇ ରହିଲେ । ସେ ସେତେବେଳେ ଓଡ଼ିଶା ବନ୍ୟା ସହାୟ ସମିତିର ସଭାପତି ଥିଲେ ।

ଏହି ସମୟରେ ଆଉ ଗୋଟିଏ ବିଶେଷ ଘଟଣା ଓଡ଼ିଶାରେ ଘଟିଥିଲା । ସେ ହେଉଛି ନୀଳଗିରି ସତ୍ୟାଗ୍ରହ । ନୀଳଗିରି ଗଡ଼ଜାତ ବାଲେଶ୍ୱର ଠାରୁ ପ୍ରାୟ ୧୩ ମାଇଲ ଦୂରରେ । ନୀଳଗିରି ପ୍ରଜାମାନେ ବର୍ଷ ତମାମ ଅନେକ ଥର ହାଣ୍ଡିଧରା ଖେଦାରେ ବେଠି ଖଟିବାକୁ ଯାଇ କର୍ମଚାରୀମାନଙ୍କ ଦ୍ୱାରା ନାନା- ପ୍ରକାର ଅତ୍ୟାଚାରିତ ହୋଇ ପ୍ରତିକାରର କୌଣସି ପ୍ରକାର ଉପାୟ ନ ଦେଖି ଘରଦ୍ୱାର ଛାଡ଼ି ବାଲେଶ୍ୱର ପଳାଇ ଆସିଲେ । ପ୍ରାୟ ଏକହଜାର ଲୋକ ଚାଲିଆସିଥିଲେ । ଏମାନଙ୍କ ଆପତ୍ତି ପଲିଟିକାଲ ଏଜେଣ୍ଟଙ୍କଠାକୁ ପଠା ଯାଇଥିଲା । ଆଣ୍ଡ୍ରୁଜ ସାହେବଙ୍କୁ ତାର କରାଗଲା । ଏମାନେ ବହୁଦିନ ଉପାସ ଭୋକେ ବାଲେଶ୍ୱରରେ ପଡ଼ି ରହି ଅବଶେଷରେ ସେମାନଙ୍କ ଆପତ୍ତି ଶୁଣା ହେବାରେ

ସେମାନେ ଘରକୁ ଫେରିଲେ । ବର୍ତ୍ତମାନ ପ୍ରଜାମାନଙ୍କ ପୂର୍ବ ଅଭିଯୋଗ କରୁ ନାହାଁନ୍ତି । ଏହି ସତ୍ୟାଗ୍ରହ ସମ୍ବନ୍ଧରେ ଧାନବନ୍ଧୁ ଆଣ୍ଡ୍ରୁଜ ତାଙ୍କର ପୂର୍ବୋକ୍ତ ପୁସ୍ତକରେ ଲେଖିଛନ୍ତି—

"ମହାତ୍ମା ଗାନ୍ଧୀ ଓଡ଼ିଶାରୁ ମାନ୍ଦ୍ରାଜ କଂଗ୍ରେସକୁ ଚାଲିଗଲାର କିଛିଦିନ ପରେ ନିକଟ ଗୋଟିଏ ଗଡ଼ଜାତରୁ ପ୍ରାୟ ଏକହଜାର ଅତ୍ୟାଚାରିତ ଚାଷୀ ନିର୍ମମ ଅତ୍ୟାଚାରର କାହାଣୀ ଘେନି ଆସି ପହଞ୍ଚିଲେ । ସେମାନେ କହିଲେ ରାଜା ବିଳାସରେ ସମସ୍ତ ଉଡ଼ାଇ ଦେଉଛନ୍ତି । ପ୍ରଜାଙ୍କ ଠାରୁ ଯେ ଖଜଣା ନିଆ ହେଉଛି ତା'ର କିଛି ହିସାବ ନାହିଁ । ଲୋକଙ୍କ ଦୁଃଖ ସୀମାଅତିତ ହେଲା ଓ ଅନେକ ଲୋକ ନ୍ୟାୟ ଅନ୍ୱେଷଣରେ ରାଜ୍ୟ ଛାଡ଼ି ପଳାଇ ଆସିଲେ । ମାସ ମାସ କାଳ ସେମାନେ ଅସୀମ ଧୈର୍ଯ୍ୟ ଧରି ପଡିଥାନ୍ତି । ସେମାନଙ୍କ ଧୈର୍ଯ୍ୟ ଖ୍ରୀଷ୍ଟିୟାନ ପୁରାଣ ଲିଖିତ 'ଜବ'ଙ୍କର ଧୈର୍ଯ୍ୟ ପରି । ଦୁଃଖ ମୋଚନ ନ ହେଲେ ସେ ଫେରିବେ ନାହିଁ ବୋଲି ସେମାନଙ୍କର ଦୃଢ଼ ସଙ୍କଳ୍ପ । ଏଠି ମଧ୍ୟ କେତେକ ସ୍ୱରାଜ୍ୟ କର୍ମୀ ଏ ଦରିଦ୍ରମାନଙ୍କୁ ନିରାହାରରୁ ରକ୍ଷା କରି ଉତ୍ସାହ ଦେଇଥିଲେ ।

ଘରଦ୍ୱାର ଛାଡ଼ି ଚାଲିଯିବା ଯେ ସତ୍ୟାଗ୍ରହର ଗୋଟିଏ ଅଙ୍ଗ ଏକଥା ୧୯୩୦ ସାଲ ବର୍ଦ୍ଦୋଲି ସତ୍ୟାଗ୍ରହ ବେଳେ ଭାରତ ବିଦିତ ହେଲା । ବ୍ରେଲସଫୋର୍ଡ଼ ସାହେବ ବର୍ଦ୍ଦୋଲି ପ୍ରଜାଙ୍କ ତ୍ୟାଗ ଦେଖି ଚମତ୍କୃତ ହୋଇଯାଇଥିଲେ । ଆଳଗିରି ପ୍ରଜାଏ ତଥା ଓଡ଼ିଶା ଲୋକେ ନ୍ୟାୟତଃ ଗର୍ବ କରିପାରନ୍ତି ଯେ ସେମାନେ ତାହାଁ ପୂର୍ବରୁ ସତ୍ୟାଗ୍ରହର ଏ ମାର୍ଗ ଜାଣିଥିଲେ ଓ ସେ ମାର୍ଗକୁ କାର୍ଯ୍ୟରେ ପରିଣତ କରି ଫଳ ପାଇଥିଲେ ।

ଶ୍ରେଷ୍ଠ ଆକାରରେ ୧୯୨୭ ସାଲରେ ଭଦ୍ରଖ ସବ୍‌ଡ଼ିଭିଜନର କୃଷ୍ଣପୁର ପ୍ରଜା ମଧ୍ୟ ଜମିଦାର ଅତ୍ୟାଚାର ଦାଉରେ ଘରଦ୍ୱାର ଛାଡ଼ି ପଳାଇ ଯାଇଥିଲେ ଓ ସତ୍ୟାଗ୍ରହରେ ସେମାନେ ଫଳ ପାଇଥିଲେ । ୧୯୨୭ ସାଲରେ ମହାତ୍ମା ଗାନ୍ଧୀ ଖଦୀ ପ୍ରଚାର ପାଇଁ ଓଡ଼ିଶା ଗସ୍ତରେ ଆସିଥିଲେ । ସେ ସମସ୍ତ ଜିଲ୍ଲାର ବିଭିନ୍ନ ଅଞ୍ଚଳ ବୁଲିଥିଲେ । ଅରଟର ମହିମା ପ୍ରଚାର ସଙ୍ଗେ ସଙ୍ଗେ ଖଦୀ କାର୍ଯ୍ୟ ପାଇଁ ଅର୍ଥ ସଂଗ୍ରହ ମଧ୍ୟ କରିଥିଲେ । ବାଲେଶ୍ୱର ଜିଲ୍ଲା ଭଦ୍ରଖ ସବ୍‌ଡ଼ିଭିଜନର ଚରବାଟିଆ ଗ୍ରାମରେ ସେ ଦୁଇଦିନ ରହିଥିଲେ । ଓଡ଼ିଶାର ଗ୍ରାମ୍ୟ ଜୀବନ ଅନୁଭବ ଏ ଅବସ୍ଥାନର ଉଦ୍ଦେଶ୍ୟ ଥିଲି । ମହାତ୍ମାଜୀ ଓଡ଼ିଶାରେ କୌଣସି ପ୍ରକାର ସଂଗଠନର କେନ୍ଦ୍ର ନ ଦେଖି ବଡ଼ ବ୍ୟଥିତ ହୋଇଥିଲେ । କଟକ ଜିଲ୍ଲା ଚମ୍ପାପୁର ହାଟରେ ନୂତନ ଆଶ୍ରମଟିଏ ସ୍ଥାପନ କରିବାର ଉଦ୍ୟମ ହେଉ-ଥିବାର ଜାଣି ମହାତ୍ମା ଗାନ୍ଧୀ ଅତି ପ୍ରୀତ ହୋଇ କହିଥିଲେ, ଏ ମରୁଭୂମିରେ ସେ ହେଉଛି ଏକମାତ୍ର ହରିତ୍‌କ୍ଷେତ୍ର । ବାସ୍ତବିକ ଆତ୍ମବିଶ୍ୱାସହିଁ ଜାତିର ଜୀବନ । ସେ ଆତ୍ମବିଶ୍ୱାସ ଉଦ୍ରେକ କରାଇବାରେ ଅହିଂସା ଅସହଯୋଗ ସ୍ୱପ୍ନାଙ୍କିତ କାମ କରାଇଥିଲି । ମାତ୍ର ତାକୁ ଧରି ରଖିବା ପାଇଁ କୌଣସି କେନ୍ଦ୍ର ନ ରହିବା ଦେଶ ସପକ୍ଷରେ ଯେ ଅମଙ୍ଗଳକର ଏହା ପରେ ଅନୁଭବ ସିଦ୍ଧ ହୋଇ ଯାଇଅଛି ।

୧୯୨୭-୨୮ ସାଲରେ ଓଡ଼ିଶାରେ ଆହୁରି ଦୁଇଗୋଟି ବିଶେଷ ଘଟଣା ଘଟିଥିଲି । ଯାହାର ଉଲ୍ଲେଖ ସ୍ୱତନ୍ତ୍ର ଭାବରେ ଆବଶ୍ୟକ । ଏହି ସମୟରେ ଭାରତ ସାରା ଚରିଆଡ଼େ ହିନ୍ଦୁ ସଂଗଠନ ଓ ହିନ୍ଦୁ ମୁସଲମାନ ସଂଘର୍ଷ ଦେଖା ଦେଇଥିଲି ।

ଇଂରାଜୀ ରାଜନୀତି ପ୍ରସୂତ ଶାସନ ସଂସ୍କାର ସଂଘର୍ଷର ମୂଳ ବୋଲି ଧରିବାକୁ ହେବ । ଲୀଗ୍‌ସରକାର ମନ୍ତ୍ରୀ ନିଯୁକ୍ତ ସମସ୍ୟା ଯେଉଁ କଲିକତାରେ ହିନ୍ଦୁ ମୁସଲମାନ ସଂଘର୍ଷ ଅତି ଭୀଷଣ ଭାବରେ ବହୁଦିନ ଚାଲିଥିଲା । ତାହାର ପ୍ରତିଘାତ ଓଡ଼ିଶାରେ ମଧ୍ୟ ଉତ୍କଟ ଆକାରରେ ପ୍ରକାଶ ପାଇଥିଲା । ଓଡ଼ିଶାରେ ମୁସଲମାନ ସଂଖ୍ୟା ଶତକଡ଼ା ୨ ହେବ । ଏପରି ହିନ୍ଦୁ ପ୍ରଧାନ ଦେଶରେ ଟିକିବେହେଲେ ସାମ୍ପ୍ରଦାୟିକ ସଙ୍ଘର୍ଷ ଘଟିପାରେ ଏହା ଆଶ୍ଚର୍ଯ୍ୟର ବିଷୟ ହେଲେ ମଧ୍ୟ ପ୍ରକୃତରେ ଏ ସମସ୍ୟା ସେ ସମୟରେ ବଡ଼ ଜଟିଳ ହୋଇଥିଲା ।

ଓଡ଼ିଶାର ହିନ୍ଦୁ ସଙ୍ଗଠନ କାର୍ଯ୍ୟ ପ୍ରଥମେ ଆରମ୍ଭ କରିଥିଲେ ପଣ୍ଡିତ ନୀଳକଣ୍ଠ ଦାଶ । ତା’ପରେ ହିନ୍ଦୁସଭା ପୁନର୍ଗଠିତ ହୋଇ ପଣ୍ଡିତ ଗୋପବନ୍ଧୁ ଦାଶ ହିନ୍ଦୁସଭାରେ ସଭାପତି ଓ ଶ୍ରୀ ନନ୍ଦକିଶୋର ଦାସ ସମ୍ପାଦକ ହେଲେ । ଏ ଅନୁଷ୍ଠାନ ସେପରି ବେଶୀ କିଛି କାମ କରି ନାହିଁ ମାତ୍ର କଲିକତାର ସାମ୍ପ୍ରଦାୟିକ ସଂଘର୍ଷର ପ୍ରତିଘାତ ବାଲେଶ୍ୱରରେ ପ୍ରକାଶ ପାଇଲା । କିପରି ଏ ସଂଘର୍ଷ ଜାତ ହେଲା ସେଥିପାଇଁ କିଏ ଦାୟୀ ସେ ବିଷୟରେ ଆଲୋଚନା କରି ବର୍ତ୍ତମାନ କିଛି ଲାଭ ନାହିଁ ବରଂ କ୍ଷତି ଘଟିପାରେ । ବିଶେଷତଃ ଲେଖକ ଏ ବ୍ୟାପାରରେ ଏପରି ଜଡ଼ିତ ଥିଲି ଓ ସେ ହିନ୍ଦୁ ପକ୍ଷର କର୍ଣ୍ଣଧାର ବୋଲି ଏପରି ଲୌକିକ ବିଶ୍ୱାସ ହୋଇ ଯାଇଥିଲା ଯେ, ତା’ ପକ୍ଷରେ ସେ ବିଷୟରେ କୌଣସି କୈଫିୟତ ଦେବା ନିରର୍ଥକ । ତେବେ ଏତିକି କୁହାଯାଇ ପାରେ ଯେ, ଲେଖକ ବାଲେଶ୍ୱରରେ ହିନ୍ଦୁ ସଭାର ଶାଖା ସ୍ଥାପନର ବିରୋଧୀ ଥିଲି । ଏପରିକି ପଣ୍ଡିତ

କହ୍ନାନ୍ ଦାସ ବର୍ମ୍ମା ଯେତେବେଳେ ପଞ୍ଜାବରୁ ଆସି ବାଲେ-
ଶ୍ୱରରେ ଆର୍ଯ୍ୟ ସମାଜର ପ୍ରଚାର ଆରମ୍ଭ କରିଥିଲେ, ସେତେ-
ବେଳେ ଲେଖକ ସେଥିରେ ଘୋର ବାଧା ଦେଇଥିଲେ । ଲେଖକ
ପ୍ରଚଳିତ ଅର୍ଥରେ 'ଧାର୍ମିକ' ନୁହନ୍ତି । ମାତ୍ର କୌଣସି ଲୋକ
ଭୟାଳୁ ହୋଇ ଅନ୍ୟର ନିର୍ଯ୍ୟାତନା ବାଧ୍ୟ ହୋଇ ସହ୍ୟ
କରିବାବେଳେ ଭୟାଳୁ ଲୋକ ମନରେ ସାହସ ଓ ପ୍ରତିରୋଧର
ଇଚ୍ଛା ଜାଗ୍ରତକରାଇବା ଏବଂ ସେହିଦଗରେ କାମ କରିବାକୁ ଲେଖକ
କର୍ତ୍ତବ୍ୟ ବୋଲି ମନେକରେ । ଏଠିକି ମାତ୍ର କେତେ ବାଲେଶ୍ୱର
ହିନ୍ଦୁ ମୁସଲମାନ ବିବାଦର ସଂକ୍ଷିପ୍ତ ବିବରଣ ଦିଆ ହେଉଅଛି ।
ଏ ବିବାଦ ବାଲେଶ୍ୱର ଏବଂ ସୋରଠରେ ସନ୍ନିବିଷ୍ଟ ଥିଲା ।
ମସ୍‌ଜିଦ ଆଗରେ ବାଜା ବଜାଇବାର ଅଧିକାର ହିଁ ଏ
ବିବାଦର ସୃଷ୍ଟି ହୋଇଥିଲା । ପ୍ରଥମେ ସରକାରୀ କର୍ତ୍ତୃପକ୍ଷ
ହିନ୍ଦୁମାନଙ୍କ ଶୋଭାଯାତ୍ରାକୁ ଆଦେଶ ଦ୍ୱାରା ବନ୍ଦ କରିଥିଲେ ।
ବଡ଼ ଠାରୁ ଛୋଟ ପର୍ଯ୍ୟନ୍ତ ସମସ୍ତ ହିନ୍ଦୁ ଅପମାନିତ ଓ ଅପଦସ୍ଥ
ମନେକରି ସୁଦ୍ଧା ଭୟରେ ଦବି ଯାଉଥିଲେ । ଲେଖକ ଏହି
ସମୟରେ ପ୍ରାୟ ଦୁଇହଜାର ହିନ୍ଦୁଙ୍କ ଶୋଭାଯାତ୍ରା ସରକାରୀ
ଆଦେଶ ତଥା ମୁସଲମାନଙ୍କ ତାଡ଼ନାକୁ ଅଗ୍ରାହ୍ୟ କରି
ବାଲେଶ୍ୱର ସହରରେ ବାହାର କରାଇଥିଲେ । ଏହି ଘଟଣା
ଫଳରେ ଲେଖକ ଜୀବନ ଉପରେ ବହୁବାର ଆକ୍ରମଣ ହୋଇ-
ଥିଲା । ଡାକ୍ତର କୃଷ୍ଣପ୍ରସାଦ ମହାନ୍ତିଙ୍କର ଜୀବନ ଉପରେ ମଧ୍ୟ
ଆକ୍ରମଣ ହୋଇଥିଲା । କେବଳ ସଂଯୋଗ ବଶତଃ ଏମାନେ ରକ୍ଷା
ପାଇଥିଲେ । ଅନ୍ୟଥା ଏମାନେ ବର୍ତ୍ତମାନ ପରଲୋକରେ
ଥାଆନ୍ତେ । ଏହି ସଂଘର୍ଷ ପରେ ସ୍ଥାନେ ସ୍ଥାନେ ମାରପିଟ

ଇତ୍ୟାଦି ହୋଇଗଲା । ମାତ୍ର ବହୁ ସଂଖ୍ୟାରେ ମାଲିମୋକଦ୍ଦମା ଓ କୋର୍ଟରେ ଉତ୍କଟ ଧରଣର ପରିବର୍ତ୍ତନ ମାତ୍ର ଚାଲିଥିଲା । ଏହା ଫଳରେ ଉଭୟ ପକ୍ଷର ବହୁ କ୍ଷତି ହୋଇଥିଲା । ସେ ସମସ୍ତ ଘଟଣା ଯେ ଘଟିବା ଉଚିତ୍ ନଥିଲା ଏହା ସମସ୍ତେ ସ୍ୱୀକାର କରିବେ ।

ଏହି ହିନ୍ଦୁ ମୁସଲମାନ ସଂଘର୍ଷବେଳେ ବାଲେଶ୍ୱରରେ ଗାୟତ୍ରୀମୀ ପୂଜା ନୂଆ ଆରମ୍ଭ ହୋଇଥିଲା । ଏହା ଓଡ଼ିଶାରେ ଏକ ଅଭିନବ ବ୍ୟାପାର । ଶ୍ରୀ ଦୁର୍ଗାପୂଜା ଅଷ୍ଟମୀ ଦିନ ଓ ଦଶହରା ଦିନ ଲାଠି ତରବାରୀ ଖେଳ ସହସ୍ର ସହସ୍ର ସଂଖ୍ୟାରେ ହିନ୍ଦୁମାନେ ଶୋଭାଯାତ୍ରା କରନ୍ତି । ଏ ଶୋଭାଯାତ୍ରା ବର୍ଷକୁ ବର୍ଷ ବଢ଼ୁଛି । ଏ ସଙ୍ଗଠନ ଶ୍ରୀ ବିଶ୍ୱନାଥ ହୋତା ପରିଶ୍ରମ କରି କରାଇଥିଲେ ।

ସେ ସମୟକାର ସାମ୍ପ୍ରଦାୟିକ ବିବାଦ ବର୍ତ୍ତମାନ ପର୍ଯ୍ୟନ୍ତ କାହାରି ମନରେ କୌଣସି ଚିହ୍ନ ରଖିନାହିଁ । ବର୍ତ୍ତମାନ ହିନ୍ଦୁ ମୁସଲମାନ ସମସ୍ତେ ଭାଇ ଭାଇ ପରି ରହିଛନ୍ତି । ମାତ୍ର ଇଂରାଜୀ ରାଜନୀତିର ପ୍ରୟୋଗ ବଳବତ୍ତର ଥିବା ପର୍ଯ୍ୟନ୍ତ ସାମ୍ପ୍ରଦାୟିକ ବିବାଦ ଶେଷ ହେଲା ବୋଲି କୁହାଯାଇ ପାରିବ ନାହିଁ ।

ଆଉ ଏକ ବିଶିଷ୍ଟ ଘଟଣା ଏହି ଯେ—ଏହି ସମୟରେ ଭାରତର ଚାରିଆଡ଼େ ଯୁବକ ଆନ୍ଦୋଳନ ହୋଇଥିଲା । ଯୁବକ-ମାନଙ୍କର ସଙ୍ଗଠନ, ଯୁବକମାନେ ଦେଶର ଉଦ୍ଧାରପାଇଁ ତିୟାର ହେବାର ରବ ଚାରିଆଡ଼େ ପଡ଼ିଗଲା । ସବୁଠି ଯୁବକ ସମିତିମାନ ସ୍ଥାପିତ ହୋଇଥିଲା । ଓଡ଼ିଶାର ଯୁବକ ଆନ୍ଦୋଳନ ମଧ୍ୟ ନିୟମିତ ଭାବରେ ଚାଲିଥିଲା । ଶ୍ରୀ ବଂଶୀଧର ମିଶ୍ର ଓ ଶ୍ରୀ ରାଜକୃଷ୍ଣ ବୋଷଙ୍କ ଯୋଜନାକ୍ରମେ ଓଡ଼ିଶାର ନାନା ସ୍ଥାନରେ ଯୁବକ ସମିତି ସ୍ଥାପିତ

ହୋଇଥିଲା । କଟକରେ 'ଯୁବକ' ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶିତ ହୋଇଥିଲା । ଗୋଟିଏ ପ୍ରକାଣ୍ଡ ଘର ଭଡ଼ା ନିଆଯାଇ ଯୁବକ ସମିତିର ଅଫିସ କରାହୋଇଥିଲା । ଶ୍ରୀଯୁକ୍ତ ବଂଶୀଧର ମିଶ୍ର ନିଜେ ଏ ଆନ୍ଦୋଳନରେ ସର୍ବସ୍ୱାନ୍ତ ହୋଇ ଯାଇଥିଲେ । ସେ ସେତେବେଳେ ଆମେରିକାରେ ଥିଲେ ମାତ୍ର ଏ ଆନ୍ଦୋଳନର କୌଣସି ଗଠନମୂଳକ କାର୍ଯ୍ୟକ୍ରମର ଭିତ୍ତି ନଥିବାରୁ ଏହା କୁଆପି ଟେକି ପାରିଲା ନାହିଁ । ଓଡ଼ିଶାରେ ମଧ୍ୟ ୧୯୨୯ ସାଲ ବେଳକୁ ଏହା ପ୍ରାୟ ଲୋପ ପାଇ ଯାଇଥିଲା । ମାତ୍ର ଏହା ଫଳରେ ଯୁବକମାନଙ୍କ ମନରେ ଉତ୍ସାହର ଭାବ ସଞ୍ଚାର କରିଥିଲା ଏଥିରେ ସନ୍ଦେହ ନାହିଁ ।

ଏ ଅଧ୍ୟାୟରେ ଏକ ମର୍ମନ୍ତୁଦ ବିବରଣୀ ଉଲ୍ଲେଖ କରି ଶେଷ କରିବାକୁ ହେବ । ସେ ହେଉଛି ପଣ୍ଡିତ ଗୋପବନ୍ଧୁଙ୍କ ପରଲୋକ ଗମନ । ପଣ୍ଡିତ ଗୋପବନ୍ଧୁ ଓଡ଼ିଶାରେ ନୂଆ ଆଦର୍ଶ ଦେଖାଇଥିଲେ । ପଣ୍ଡିତ ଗୋପବନ୍ଧୁ ଆଜୀବନ ଦରିଦ୍ରସେବାରେ ନିଯୁକ୍ତ ଥିଲେ । ମୃତ୍ୟୁପର୍ଯ୍ୟନ୍ତ ସେ ଜନ ସେବାରେ ରତ ରହି ପ୍ରାଣ ତ୍ୟାଗକଲେ । ଏପରି ମୃତ୍ୟୁରେ ଖୁବ୍ ଉଚ୍ଚ ଧରଣର ଦେଶ ସେବାର ମଧ୍ୟ ଈର୍ଷା ହେବ । ପଣ୍ଡିତ ଗୋପବନ୍ଧୁଙ୍କୁ ଓଡ଼ିଶା ଚିରକାଳ ଝୁରିବ । ବେଶୀ କରି ଝୁରିବ ସେ ଯେ ୧୯୩୦ ସାଲର ଜାଗରଣ ଦେଖି ପାରିଲେ ନାହିଁ ଯେ ଜାଗରଣ ପାଇଁ ସେ ପ୍ରାଣପଣେ ଚେଷ୍ଟା କରିଥିଲେ ।

## ଚଉଦ

ଅଳ୍ପଦିନେ ଜଣାପଡ଼ିଲା ଯେ ଜିଲାବୋର୍ଡ଼, ମ୍ୟୁନିସିପାଲିଟି ବା ଲୋକାଲବୋର୍ଡ ଏସବୁ ଉପରେ ଦେଖିବାକୁ ନିର୍ବାଚନ ମୂଳକ ଓ କିଛି କିଛି କାର୍ଯ୍ୟକାରୀ ହେଲେହେଁ ପ୍ରକୃତ ତାହା ନୁହେଁ । ଜିଲାବୋର୍ଡ଼, ମ୍ୟୁନିସିପାଲିଟିକୁ ଯେତିକି କ୍ଷମତା ଆଇନ ଅନୁସାରେ ଦିଆହୋଇଛି ସେତିକି କ୍ଷମତା ବଳରେ କିଛି କାମ କରିବା ମଧ୍ୟ ସମ୍ଭବ ନୁହେଁ । ସବୁବେଳେ ସେ କ୍ଷମତାରେ ହସ୍ତକ୍ଷେପ, ଲୋକ ପ୍ରତିନିଧିମାନଙ୍କ ମତକୁ ଅଗ୍ରାହ୍ୟ କରିବା ଏସବୁ କଂଗ୍ରେସ ଲୋକ ଅନୁଭବ କଲେ । ତା'ପରେ ଆଉ ମଧ୍ୟ ଲୋକମତ ଅନୁସାରେ ନିର୍ବାଚନଟା ଲୋକେ ଦେଖା କଥା ବୋଲି ଜଣା ପଡ଼ିଗଲା । ହାକିମମାନେ ନିର୍ବାଚନରେ ଲୋକମତକୁ ଭ୍ରଷ୍ଟ କରିଦେବା ପାଇଁ ନ୍ୟାୟ ଅନ୍ୟାୟ ସବୁ କିଛି ଅବାଧ ଭାବରେ କଲେ ! ନିର୍ବାଚନ ପାଇଁ ପ୍ରତିନିଧିମାନଙ୍କ ଦରଖାସ୍ତକୁ ବେଆଇନ ଭାବରେ ନାମଞ୍ଜୁର କରି ଦେବାଟା ସାଧାରଣ କଥା ବୋଲି ଜଣା ପଡ଼ିଲା । ଭୋଟ ଦିଆହେବା ଘରେ ସରକାରୀ କର୍ମଚାରୀମାନେ ରହି ଭୋଟଦାତାମାନଙ୍କୁ ସ୍ୱାଧୀନ ମତ ଦେବାରେ ବାଧା ଦେବା ବିଧିବଦ୍ଧ ଭାବରେ ଚାଲିଲା । ଦାତା ଦଣ୍ଡଧାରକ ହେଲେ ଉପାୟ କଅଣ ? ଯେଉଁମାନେ କାଳ୍ପନିକ ସ୍ୱାୟତ୍ତଶାସନ ଦେଇଛନ୍ତି ସେହିମାନେ ତାକୁ ଏ ହାତରେ ସେ ହାତରେ ଲୁଚାଇ କରି ନେଲେ ବଳ କଅଣ ? ମୋଟା କଥା ଖୁବ୍ ଶୀଘ୍ର ଜଣା ପଡ଼ିଗଲା ଯେ ଏସବୁ କଥାକଥିତ ସ୍ୱାୟତ୍ତଶାସନ ଦାନରେ କିଛି ଅର୍ଥ ନାହିଁ । ଲୋକମତ ଉପରେ ନିର୍ଭର କରି ଜିଲାବୋର୍ଡ଼,

ମ୍ୟୁନିସିପାଲିଟିରେ ରହି ପାରିବା ମଧ୍ୟ ସମ୍ଭବ ନୁହେଁ । କେତେକ ନିଜ ଅନୁଭବରୁ ଏହା ବୁଝିଲେ, କେତେକ ବାଧ୍ୟ ହୋଇ ସେହି କଥା ବୁଝିଲେ । ଲେଖକ ବାଧ୍ୟ ହୋଇ ସେ କଥା ବୁଝିଥିଲି । ଯାହାହେଉ ୧୯୩୦ ପୂର୍ବରୁ ନିର୍ବାଚନ କାର୍ଯ୍ୟକ୍ରମ ଉପରେ ଦେଶ ବ୍ୟାପୀ ଅସନ୍ତୋଷ ପ୍ରକାଶ ପାଇଥିଲା । ଏପରିକି ଏହି ନିର୍ବାଚନ କାର୍ଯ୍ୟକ୍ରମର ଜନୈକ ପୁରୋଧା ପଣ୍ଡିତ ମୋତିଲାଲ ନେହେରୁ ଲାହୋର କଂଗ୍ରେସରେ ନିର୍ବାଚନ ବର୍ଜ୍ଜନର ପ୍ରସ୍ତାବ ଆଗତ କରିଥିଲେ । ନିର୍ବାଚନରେ ଯେ ନୈତିକ ଅବନତି ଘଟିଯାଏ ସେ କଥା ମଧ୍ୟ ସେ ଉଲ୍ଲେଖ କରିଥିଲେ ।

ଲାହୋର କଂଗ୍ରେସରେ ପଣ୍ଡିତ ଜହରଲାଲଙ୍କର ନେତୃତ୍ୱରେ ପୂର୍ଣ୍ଣ ସ୍ୱାଧୀନତା ଭାରତର ଲକ୍ଷ୍ୟ ବୋଲି ଘୋଷିତ ହେଲା । ମହାତ୍ମା ଗାନ୍ଧୀ ନଥିଲେ ଏ ପ୍ରସ୍ତାବ ବୋଧହୁଏ କେବଳ କଥା-ବାର୍ତ୍ତାରେ ରହିଯାଇ ଜଗତର ହାସ୍ୟ ଉଦ୍ରେକ କରାଇ ଥାଆନ୍ତା, ମାତ୍ର ମହାତ୍ମା ଗାନ୍ଧୀ ଏ ପ୍ରସ୍ତାବ ଅନୁଯାୟୀ କାର୍ଯ୍ୟ କରିବା ପାଇଁ ବଦ୍ଧପରିକର ହେଲେ । ମହାତ୍ମା ଗାନ୍ଧୀଙ୍କ ନିଷ୍ଠା ଓ ଜହରଲାଲଙ୍କ ତେଜ ଦେଶରେ ଏକ ଅଭିନବ ଅବସ୍ଥା ସୃଷ୍ଟି କରିଦେଲା । ଓଡ଼ିଶାରେ ଯେଉଁମାନେ ଜିଲ୍ଲାବୋର୍ଡ଼ ପ୍ରଭୃତିରୁ ବାହାରି ଆସିଥିଲେ ସେମାନେ ଏକ ମହା ଅଡୁଆରେ ପଡ଼ିଲେ । ସେସବୁ ସରକାରୀ ଅନୁଷ୍ଠାନରୁ ବାହାରି ଆସି ଦେଶରେ ଛିଡ଼ା ହେବାପାଇଁ ଆଉ ସ୍ଥାନ ନାହିଁ । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଜିଲ୍ଲାବୋର୍ଡ଼ କାର୍ଯ୍ୟ ପରେ କର୍ମୀ ଖୋଜିବା ଓ ନିଜକୁ ତଥା ନିଜ ପରିବାରକୁ ବିରାଟ ତ୍ୟାଗ ପାଇଁ ପ୍ରସ୍ତୁତ କରିବାରେ ଲାଗିଲେ । ସେ ନିଜ ଘରେ ଅଧିକାଂଶ ସମୟରେ ତୁଳାଭିଣା, ସୂତାକଟା ଇତ୍ୟାଦି ଉପରକୁ ଦେଖିବାକୁ

ସାମାନ୍ୟ କାମରେ ନିଯୁକ୍ତ ରହିଲେ । ଲେଖକର ମନେ ଅଛି ସେତେବେଳେ ନିର୍ବାଚନ ଉତ୍ତେଜନାରୁ ମୁହଁ ଫେରାଇ ପଛକୁ ଅନାଇବା ବେଳକୁ ଯେପରି ସବୁ ଚାଲିଯାଇଛି ଏହିପରି ଜଣା ପଡ଼ୁଥାଏ । ଲୋକ ସାଧାରଣଙ୍କ ଠାରୁ ବହୁଦୂରରେ ତଥାକଥିତ ନେତାମାନେ କପରି ଓ କ ସୂତ୍ରରେ ଲୋକ ସାଧାରଣଙ୍କ ସହିତ ମିଶିବାକୁ ପଡ଼ିବ ଏହାହିଁ ଚିନ୍ତାର ବିଷୟ ହେଲା । ଓଡ଼ିଶାରେ ଲୁଣ ସମ୍ବନ୍ଧରେ କିଛି ଆନ୍ଦୋଳନ କଲେ ହୁଅନ୍ତା ବୋଲି ବହୁବାର ଆଲୋଚିତ ହୋଇଛି । ମାତ୍ର କିଛି ଉପାୟ ଦିଶୁ ନଥାଏ । ଯାହାହେଉ ଲାଟସାହାବରୁ ଫେର ଦୃଷ୍ଟି ଲୋକଙ୍କ ଆଡ଼କୁ ପଡ଼ିବାରେ ଲାଗିଲା । କିନ୍ତୁ ଯେଉଁମାନେ ନିର୍ବାଚନ କାର୍ଯ୍ୟକ୍ରମରେ ଏକବାରେ ମଜ୍ଜି ଯାଇଥିଲେ ସେମାନେ ଏଣେ ଦେଶର ଯେ ନୂତନ ମନୋଭାବ ତାହା ଜାଣିପାରି ନଥିଲେ । ସୁଖର ବିଷୟ ଓଡ଼ିଶାରେ ସେପରି ଲୋକ ବେଶୀ ନଥିଲେ । କେବଳ ପଣ୍ଡିତ ନୀଳକଣ୍ଠ କଂଗ୍ରେସ ଆଦେଶ ମାନି ବଡ଼ଲାଟ ସଭାରୁ ଇସ୍ତଫା ଦେଇ ପୁଣି ସ୍ୱାଧୀନ ଭାବରେ ନିର୍ବାଚିତ ହୋଇଥିଲେ । ସତ୍ୟାଗ୍ରହ ବେଳେ ଲୋକଙ୍କ ଉତ୍ସାହରେ ଅଭିଭୂତ ହୋଇ ପୁଣି ସେ ଇସ୍ତଫା ଦେଲେ ଓ ସତ୍ୟାଗ୍ରହରେ ଯୋଗଦେଲେ ।

୧୯୩୦ ସାଲରେ ଯେ ପ୍ରବଳ ବିପ୍ଳବର ବାତ୍ୟା ଦେଶରେ ବହିଗଲା ତାହାର କୌଣସି ପୂର୍ବାଭାସ ପୂର୍ବରୁ ପରିଲକ୍ଷିତ ହେଉ ନଥିଲା । ଦେଶର ଲୋକେ, ଗ୍ରାମର ଲୋକେ ଗୃହୀଏ ଯେ ସ୍ୱାଧୀନତା ପ୍ରୟାସୀ ଓ ଅହିଂସା ଉପାୟକୁ ସହଜରେ ବୁଝି ତଦନୁସାରେ କାମ କରି ପାରନ୍ତି ଏକଥା ୧୯୩୦ ରେ ସତ୍ୟାଗ୍ରହ ଦେଖାଇଦେଲା । ଇଂରେଜୀ ଶିକ୍ଷିତ ଲୋକେ ବିଶେଷତଃ ଲାଟସାହା-

ବାସୀମାନେ ଦେଶର ସୁପ୍ତ ଶକ୍ତି ବୁଝିପାରି ନଥିଲେ । ବୋଧହୁଏ ସେମାନେ କେବେ ବି ବୁଝିବେ ନାହିଁ । ଯାହାହେଉ ପୂର୍ଣ୍ଣ ସ୍ୱାଧୀନତା ପାଇଁ ଉଦ୍ୟମ ୧୯୩୦ରେ କରିବାକୁ ହେବ ଏଥିପାଇଁ ଓଡ଼ିଶାର କଂଗ୍ରେସ କମିଟିମାନ ଭଲ କରି ଗଢ଼ାହେଲା । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଏହିଥର ଉତ୍କଳ ମହାସଭାର ପ୍ରକୃତ କର୍ଣ୍ଣଧାର ହେଲେ । ପ୍ରାଦେଶିକ ମହାସଭାର ସଭାପତିରୂପେ ଲେଖକ ନିଯୁକ୍ତ ହୋଇ-ଥିଲେ ମଧ୍ୟ ଶ୍ରୀଯୁକ୍ତ ଚୌଧୁରୀଙ୍କ ନିର୍ଦ୍ଦେଶରେ ସମସ୍ତ କାର୍ଯ୍ୟ ପରିଚାଳିତ ହୋଇଥିଲା ।

ଶ୍ରୀଯୁକ୍ତ ଚୌଧୁରୀ ୧୯୨୧ ସାଲ ଆନ୍ଦୋଳନରେ ପ୍ରାୟ ନୀରବ ଥିଲେ । ଅଳକାଶ୍ରମର କର୍ତ୍ତା, ତା'ପରେ ଜିଲ୍ଲାବୋର୍ଡର କର୍ତ୍ତା, ତା'ପରେ ବାହାରରୁ ପୂରାପୂରି ନୀରବ ହୋଇ ଯାଇଥିଲେ । ଏହି ନୀରବତା ମଧ୍ୟରେ ସେ ନିଜେ କି ସାଧନା କରିଥିଲେ କେଜାଣେ କିନ୍ତୁ କେତେଜଣ ଉତ୍କୃଷ୍ଟ କର୍ମୀ ତିଆରି କରି ପାରି-ଥିଲେ । ଶ୍ରୀମତୀ ରମାଦେବୀ ହେଉଛନ୍ତି ସେଥିରେ ମୁଖ୍ୟ । ଇତି ମଧ୍ୟରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସହଧର୍ମିଣୀ ରୂପେ ଶ୍ରୀମତୀ ମାଳତୀ ଦେବୀଙ୍କ ଚୌଧୁରୀ ପରିବାରରେ ଆବିର୍ଭାବ ଗୋଟିଏ କେବଳ ସାମାଜିକ ବିପ୍ଳବ ତାହା ନୁହେଁ, ଓଡ଼ିଶାର ନାରୀ ଜାଗରଣ ମଧ୍ୟ ତାହା ଗୋଟିଏ ପ୍ରଧାନ ହେତୁ । ଶ୍ରୀମତୀ ମାଳତୀ ଦେବୀ ଜଣେ ଉଚ୍ଚ ଶିକ୍ଷିତା, ସମ୍ଭ୍ରାନ୍ତ ବଙ୍ଗାଳି ରମଣୀ । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ତାଙ୍କର ସାନ ଭାଇ ଶ୍ରୀ ନବକୃଷ୍ଣ ଚୌଧୁରୀ, ରମାଦେବୀ ଓ ମାଳତୀ ଦେବୀ, ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ ଏମାନେ କଟକରେ ସତ୍ୟାଗ୍ରହର ସ୍ୱପ୍ନ ପ୍ରଥମେ ଦେଖିଥିଲେ । ସେହି ସମୟରେ ବାଲେଶ୍ୱରରେ ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଦାସ, ଶ୍ରୀ

ବିଶ୍ୱନାଥ ଦାସ, ଶ୍ରୀ ଗୋକୁଳାନନ୍ଦ ମହାନ୍ତି ଓ ଲେଖକ ମଧ୍ୟ ସତ୍ୟାଗ୍ରହର ସ୍ୱପ୍ନ ଦେଖିଲେ । କିପରି କଣ ହେବ କିଛି ଜଣା ଯାଉ ନଥିଲା । ଏପରିକି ଓଡ଼ିଶାରୁ ଚାଲି ଯାଇ ମହାତ୍ମାଜୀଙ୍କ ପାଖରେ ଗୁଜରାଟରେ ସତ୍ୟାଗ୍ରହ କରି କର୍ତ୍ତବ୍ୟ ଶେଷ କରିବା ପାଇଁ ମଧ୍ୟ ଚିନ୍ତା ଆସୁଥିଲା । ଏହି ଅବସ୍ଥାରେ ଉତ୍କଳ ପ୍ରାଦେଶିକ ମହାସଭାର କାର୍ଯ୍ୟକାରୀ ବୈଠକରେ ବିଶ୍ୱର ଦାସ ଓ ଲେଖକ ଉପରେ ଭାର ଦିଆଗଲା ସତ୍ୟାଗ୍ରହର କ୍ଷେତ୍ର ପ୍ରସ୍ତୁତ କରିବା ପାଇଁ । ଏତେ ଉତ୍ସାହ ଏତେ ତେଜ ତଥାକଥିତ ନିରୀହ ଗ୍ରାମବାସୀଙ୍କ ଭିତରେ ଅଛି ତାହା କେବଳ ଲବଣ ସତ୍ୟାଗ୍ରହରେ ଦେଖାଗଲା ।

# ପନ୍ଦର

ଭାରତର ପୂର୍ଣ୍ଣ ସ୍ୱାଧୀନତା ଆନ୍ଦୋଳନ ନିଷ୍ଠପୂ ଚଳାଇବାକୁ ହେବ, ମହାତ୍ମାଗାନ୍ଧୀଙ୍କର ଏ ଘୋଷଣା ଦେଶରେ ମହା ଚାଞ୍ଚଲ୍ୟ ଆଣି ଦେଇଥିଲା । କି ଭାବରେ ସେ ଆନ୍ଦୋଳନ ଚାଲିବ, ସେ ଆନ୍ଦୋଳନ କି ରୂପ ଧରିବ ଏ ସମ୍ବନ୍ଧରେ ଚାରିଆଡ଼େ ନାନା ପ୍ରକାର କଳ୍ପନା ଜଳ୍ପନା ଚାଲିଥାଏ, ଏହି ସମୟରେ ମହାତ୍ମାଗାନ୍ଧି ଘୋଷଣା କଲେ ଯେ, "ଲୁଣ ଆଇନ ଅମାନ୍ୟ" ସତ୍ୟାଗ୍ରହ ଆନ୍ଦୋଳନର ସ୍ୱରୂପ ହେବ । ଯେଉଁମାନେ ନିଜକୁ ଅତି ବଡ଼ ରାଜନୈତିକ ମନେ କରନ୍ତି ସେମାନେ ଏ ଘୋଷଣାକୁ ହସରେ ଉଡ଼ାଇ ଦେଲେ । କାହିଁ ଭାରତର ସ୍ୱାଧୀନତା, କାହିଁ ସାମାନ୍ୟ ଲୁଣ ଆଇନ !!! ଆମେରିକାର ସ୍ୱାଧୀନତା ଯୁଦ୍ଧ ଯେ ଚା' ବାକ୍ସ ଫୋପାଡ଼ିବାରୁ ଆରମ୍ଭ ହୋଇଥିଲା ଏକଥା ସେମାନେ ଭୁଲିଯାଇ ଥିଲେ । ମାତ୍ର ଶେଷରେ ବୁଝିଲେ ଯେ ଲୁଣ ଆଇନ ବିରୋଧରେ ଜନମତ କି ଭୀଷଣ । ଲୁଣ ଆଇନ ଅମାନ୍ୟ କରି ଲୁଣ ମାରିବାକୁ ହେବ ଏ ଘୋଷଣା ଓଡ଼ିଶାରେ ଚାରିଆଡ଼େ ବିଦ୍ୟୁତ୍ ଖେଳାଇ ଦେଇଥିଲା । ଓଡ଼ିଶାର ସମ୍ବଳ ଥିଲା ଲୁଣ ବ୍ୟବସାୟ । ଚାଷ ବାଦ ଏକମାତ୍ର ଧନ୍ଦା ଲୁଣ ତିଆରି ଯାହା ଉପରେ ଓଡ଼ିଶା ନିର୍ଭର କରି ଆସିଥିଲା । ଓଡ଼ିଶାର ଅନେକ ବଡ଼ ଲୋକଙ୍କର ମୂଳ ଇତିହାସ

ଲୁଣ ବ୍ୟବସାୟରେ ପ୍ରତିଷ୍ଠିତ । ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଯେତେବେଳେ ଲୁଣ ଆଇନ ଏ ଦେଶରେ ଜବରଦସ୍ତ ଚାଲିଲା ସେତେବେଳେ ଓଡ଼ିଶାରେ ବିଦ୍ରୋହ ମଧ୍ୟ ହୋଇଥିଲା । ସେତେବେଳେ କଟକ ଜିଲାରେ ସାମରିକ ଆଇନ ଜାରି ହୋଇଥିଲା । ଲୁଣ ଯେ ନିରନ୍ନ ଓଡ଼ିଶାର ସହାୟ ଏ କଥା ସରକାର ମଧ୍ୟ ଜାଣନ୍ତି । କାରଣ ବହୁବାର ଦୁର୍ଭିକ୍ଷ ଦୁଃଖ ସମୟରେ ସରକାର ଆଦେଶ ଦେଇ ଲୁଣମରା ଅସ୍ଥାୟୀ ଭାବରେ ଛାଡ଼ି କରାଇ ଦେଇଛନ୍ତି । ଥରେ ୧୯୨୭ ସାଲରେ କେତେଜଣ ଗରିବ ଗୃହସ୍ଥ ଲୁଣମାରି ସେଇଥିରେ ଶାଗପତ୍ର ସିଝାଇ ଜୀବିକା ନିର୍ବାହ କରୁଥିଲେ ଓ ଲୁଣ ଆଇନ୍ ଅନୁସାରେ ସେଥିପାଇଁ ଅପରାଧୀ ବିବେଚିତ ହୋଇ ସେମାନେ ବାଲେଶ୍ୱର ହାକିମଙ୍କ ଦ୍ୱାରା ଅର୍ଥଦଣ୍ଡ ପାଇଲେ । ଏ ବିଷୟ ପ୍ରତି ଲେଖକ ଲାଟସଭାରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଫଳରେ ଜରିମାନା ଫେରାଇ ଦିଆ ହୋଇଥିଲା ଓ ବର୍ଷକ ପାଇଁ ଲୁଣମରା ଛାଡ଼ି କରି ଦିଆ ହୋଇଥିଲା । ଏଥିରୁ ଜଣା ପଡ଼ିବ ଯେ ଲୁଣ ଆଇନର ଅନ୍ୟାଯ୍ୟତା ନିଜେ ସରକାର ମଧ୍ୟ ଜାଣନ୍ତି । ସରକାର କର ସମ୍ବନ୍ଧରେ ଅନୁସନ୍ଧାନ କରିବା ପାଇଁ ଯେଉଁ କମିଟି ବସାଇଥିଲେ ସେ ମଧ୍ୟ ସୁପାରିସ କରିଥିଲେ ଯେ ଏ ଅନ୍ୟାଯ୍ୟ ଲୁଣକର ଉଠିଯାଉ ମାତ୍ର କେହି ଶୁଣିଲେ ନାହିଁ । ବାଡ଼ି ପାଖରେ ଲୁଣପାଣି ସେଥିରୁ ଲୁଣ ନ ମାରି ଲୁଣ କିଣି ଲୋକେ ଖାଇବେ ଏ ଅନ୍ୟାୟ ସମସ୍ତେ ବୁଝୁଥିଲେ, ଜାଣୁଥିଲେ, ମାତ୍ର ଭାଗ୍ୟକୁ ଆଦରି ସମସ୍ତେ ପଡ଼ି ରହିଥିଲେ । ମହାତ୍ମାଜୀଙ୍କ ନିର୍ଘୋଷ ଲୋକଙ୍କ ନିରାଶା ମଧ୍ୟରେ ଟିକିଏ ଆଶା ଆଣିଦେଲା । ଭାଗ୍ୟବାଦରେ ପୁରୁଷକାରିତା

ପ୍ରବେଶ କରାଇଲେ । ଉତ୍କଳ ପ୍ରାଦେଶିକ ମହାସଭା ଠିକ୍ କଲେ ଯେ ବାଲେଶ୍ୱରଠାରୁ ୧୨ ମାଇଲ ଦୂର ଇଞ୍ଚୁଡ଼ିରେ ସତ୍ୟାଗ୍ରହ କ୍ଷେତ୍ର ହେବ, ତଦନୁସାରେ ସମସ୍ତ ଆୟୋଜନ ଚାଲିଲା ।

ଗୁଜରାଟର ଦାଣ୍ଡି ନାମକ ସ୍ଥାନରେ ଲୁଣ ଆଇନ ଅମାନ୍ୟ କରିବା ପାଇଁ ମହାତ୍ମା ଗାନ୍ଧୀ ତାଙ୍କ ଆଶ୍ରମରୁ ମାର୍ଚ୍ଚ ୧୨ ତାରିଖ ଦିନ ବାହାରିଲେ । ରାମଙ୍କର ଲଙ୍କା ଅଭିଯାନ ପରି ମହାତ୍ମାଜୀଙ୍କର ଦାଣ୍ଡି ଅଭିଯାନ ଦିନେ ପୌରାଣିକ ହୋଇଯିବ ମାତ୍ର ସେ ଅଭିଯାନର ମହତ୍ତ୍ୱ ସମସାମୟିକ ଲୋକେ ହିଁ ବେଶି ଉପଲବ୍ଧି କରିବେ । ସେ ସମୟକାର ମହାତ୍ମାଜୀଙ୍କର ଯୁଦ୍ଧ ପାଇଁ ଆହ୍ୱାନ ମୃତ ପିଣ୍ଡରେ ସୁଦ୍ଧା ପ୍ରାଣର ସଞ୍ଚାର କରୁଥିଲା । "ମୋ ଶବ ପଛେ ସମୁଦ୍ରରେ ଭାସୁ, ମୋର ମୃତଦେହରୁ ହାଡ଼ ଟାଣିନେଇ କୁକୁର ପଛେ ଚୋବି ଖାଉ ମୁଁ ସ୍ୱରାଜ୍ୟ ବିନା ଫେରିବି ନାହିଁ ।" ଏ ଉକ୍ତି ବର୍ତ୍ତମାନ ସୁଦ୍ଧା ଧମନୀରେ ବିଦ୍ୟୁତ୍ ଖେଳାଇ ଦେଉଛି । ମହାତ୍ମାଜୀ ଏପ୍ରିଲ ୬ ତାରିଖ ଦିନ ଦାଣ୍ଡିରେ ଲୁଣ ଆଇନ ଭାଙ୍ଗିଲେ । ଓଡ଼ିଶାରେ ସେହିଦିନ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଓ ତାଙ୍କ ଦଳ 'ଇଞ୍ଚୁଡ଼ି' ଯାତ୍ରା ଆରମ୍ଭ କଲେ । କଟକରୁ ବାହାରି ପଦବ୍ରଜରେ ଚାଲିବାଲି ବାଟେ 'ଇଞ୍ଚୁଡ଼ି'ରେ ପହଞ୍ଚିବାର କଳ୍ପନା ଥିଲା । ମାତ୍ର ଅପ୍ରେଲ ୧୦।୧୧ ତାରିଖ ଦିନ ସବୁଠି ସତ୍ୟାଗ୍ରହ ଆରମ୍ଭ ହେବାର ନିର୍ଦ୍ଦେଶ ମହାତ୍ମାଜୀ ଦେବାରୁ ଆଚାର୍ଯ୍ୟ ହରିହର ଦାଶ ସେହିଦିନ ଇଞ୍ଚୁଡ଼ିରେ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ଆଚାର୍ଯ୍ୟ ହରିହର ନିରାହତା ପାଇଁ ପ୍ରସିଦ୍ଧ । ଓଡ଼ିଶାର ସୌଭାଗ୍ୟ ଯେ ସତ୍ୟାଗ୍ରହ ଯୁଦ୍ଧରେ ପ୍ରଥମେ ନିରୀହତମ ଲୋକଙ୍କୁ ସେନାପତି ରୂପେ ପାଇଥିଲେ । ବାଲେଶ୍ୱରର ପରମିଟ କୋଠି ସତ୍ୟାଗ୍ରହ

ଶିବିର ହୋଇଥିଲା । ସଂଯୋଗବଶତଃ ଲୁଣ ଆଇନ ଆରମ୍ଭର ପ୍ରଥମ ଅବସ୍ଥାରେ ଲୁଣ ମାରିବା ପାଇଁ ଏହି ପୁରାତନ ଗୃହରୁ ଫିସ ନିଆ ହୋଇ ଅନୁମତି ଦିଆ ଯାଉଥିଲା । ତା ୧୨ ତାରିଖ ଦିନ ସନ୍ଧ୍ୟା ପ୍ରାର୍ଥନା ଶେଷ କରି ଆଚାର୍ଯ୍ୟ ମହାଶୟ ଓ ତାଙ୍କର ଦଳ ବାଲେଶ୍ୱରରୁ ଇଞ୍ଚୁଡ଼ି ଅଭିମୁଖରେ ଯାତ୍ରାକଲେ । ସେ ସମୟର ଉତ୍ସାହ ଓ ଉତ୍ତେଜନା ବର୍ଣ୍ଣନା କରିବା କଠିନ । ପଥ ପ୍ରାନ୍ତର ସବୁ ଲୋକାରଣ୍ୟ । ସେ ଦିନ ଅଭିଯାନରେ ଆଚାର୍ଯ୍ୟ ମହାଶୟ ଯେ ସମ୍ବର୍ଦ୍ଧନା ପାଇଥିଲେ ସେ ସମ୍ବର୍ଦ୍ଧନା ଯେକୌଣସି ସମ୍ରାଟଙ୍କ ପକ୍ଷରେ ଈର୍ଷାର କାରଣ ହୋଇ ରହିଥିବ । କୁଳବଧୂମାନେ ଘରୁ ବାହାରି ଆସି ଆଚାର୍ଯ୍ୟ ଓ ତାଙ୍କର ଦଳଙ୍କୁ ଅର୍ଘ୍ୟ ବନ୍ଦାପନା ଦେଇ ସମ୍ବର୍ଦ୍ଧନା କରୁଥିଲେ । ଓଡ଼ିଶା ଇତିହାସରେ ନାରୀର ଏହି ପ୍ରଥମ ସମୂହ ପଦତ୍ୟାଗ ।

୧୩ ତାରିଖ ଦିନ ମହାବିଷୁବ ସଂକ୍ରାନ୍ତି । ଓଡ଼ିଶାରେ ମହତ ଦିନ, ସେହିଦିନ ସତ୍ୟାଗ୍ରହ ଆରମ୍ଭ ହେଲା । ଦୃଶ୍ୟ ଦେଖିବା ପାଇଁ ହଜାର ହଜାର ଲୋକ ଜମା ହୋଇଥିଲେ । ସତ୍ୟାଗ୍ରହରେ ଯୋଗ ଦେବାପାଇଁ ମଧ୍ୟ ହଜାର ହଜାର ଉପସ୍ଥିତ ଥିଲେ । ବାସ୍ତବିକ୍ ଇଞ୍ଚୁଡ଼ିରେ ସାଧାରଣ ଜନତା ଯେ ସାହସରେ ଅନ୍ୟାୟ ଲୁଣ ଆଇନ ଅମାନ୍ୟ କରିଥିଲେ ତାହା ଚିରକାଳ ଇତିହାସରେ ଗୌରବମୟ ହୋଇ ରହିଥିବ । ସ୍ତ୍ରୀ, ପୁରୁଷ, ବାଳକ ସମସ୍ତେ ଲୁଣମାରି ସମସ୍ତ ନିର୍ଯ୍ୟାତନା ସହ୍ୟ କଲେ । ସରକାର ମାତ୍ର କେତେଜଣଙ୍କୁ ଧରି ଜେଲ୍ ଦେଇଥିଲେ । ଅନ୍ୟମାନଙ୍କୁ ପୋଲିସ ଲାଠି ଓ ବୁଟ୍‌ଯୋତା ମାଡ଼ଦେଇ ଜବଦ୍ କରିବା ପାଇଁ ଚେଷ୍ଟା କରିଥିଲେ । ମାତ୍ର ସବୁ ନିରର୍ଥକ ହୋଇଥିଲା ।

ଏତେବେଳକୁ ଶ୍ରୀ ସୁରେନ୍ଦ୍ରନାଥ ଦାସ ଓ ଶ୍ରୀ ଜୀବରାମଜୀ କଲ୍ୟାଣଜୀ କୋଠାରୀ ଧରା ହୋଇ ଜେଲ୍ ଚାଲିଗଲେଣି ମାତ୍ର ଶ୍ରୀ ସୁରେନ୍ଦ୍ରଙ୍କ କ୍ଷେତ୍ର ତିଆରି ଏପରି ଥିଲା ଯେ, ଲୋକେ ସରକାରଙ୍କ ପକ୍ଷକୁ ପୁରାପୁରି ବର୍ଜ୍ଜନ କରି ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ଇଞ୍ଚୁଡ଼ିରେ ସରକାର ପକ୍ଷର ଶିବିର ମଧ୍ୟ ପଡ଼ିଥିଲା । ଜିଲ୍ଲା ମାଜିଷ୍ଟ୍ରେଟ, ପୋଲିସ ସାହେବ, ସଶସ୍ତ୍ର ପୋଲିସ ସମସ୍ତେ ଜମା ହୋଇ ରହିଥିଲେ । ମାତ୍ର ସ୍ଥାନୀୟ ଲୋକେ କୌଣସି ପ୍ରକାର ଏମାନଙ୍କ ସହିତ ସମ୍ବନ୍ଧ ରଖି ନ ଥିଲେ ଏପରିକି ଏମାନେ ବାଲେଶ୍ୱରରୁ କାଠ ଆଣି ରୋଷେଇ କରି ଦିନ କାଟିଥିଲେ ।

ଇଞ୍ଚୁଡ଼ି ସତ୍ୟାଗ୍ରହରେ ଯୋଗ ଦେବାପାଇଁ ଦଳକୁ ଦଳ ଓଡ଼ିଶାର ସବୁ ଅଞ୍ଚଳରୁ ସେନାନୀ ଆସିଥିଲେ । କଟକରୁ 'ଲୌହସ୍ତମ୍ଭ' ବାହିନୀ, ପୁରୀରୁ 'ପତିତପାବନ ବାହିନୀ', ସମ୍ବଲପୁରରୁ ଏକ ବାହିନୀ, ଗଞ୍ଜାମରୁ ଏକ ବାହିନୀ, ଓଡ଼ିଶା ଗୁଜୁରାଟିମାନଙ୍କର ଏକ ବାହିନୀ ଏହିପରି କେତେ ସତ୍ୟାଗ୍ରହୀ ବାହିନୀ ଇଞ୍ଚୁଡ଼ି ରଣକ୍ଷେତ୍ରରେ ଯୋଗ ଦେଇଥିଲେ ।

ଇଞ୍ଚୁଡ଼ିର ଆଖପାଖ ଗ୍ରାମର ଲୋକେ ଗାଁକୁ ଗାଁ ଅଜାଡ଼ି ହୋଇପଡ଼ି ଲୁଣ ଆଇନ ଅମାନ୍ୟ କଲେ । କାର୍ଯ୍ୟତଃ ଲୁଣ ଆଇନ ରଦ୍ ହୋଇଗଲା । ସହସ୍ର ସହସ୍ର ଲୋକଙ୍କୁ ଜେଲ୍ ଦେବା ସମ୍ଭବ ହେଲା ନାହିଁ । ତେଣୁ ଲାଠିମାଡ଼—ନିର୍ଦ୍ଦୟ ପ୍ରହାର ହେଲା ବିପକ୍ଷର ଅସ୍ତ୍ର । ଏହି ପ୍ରକାର ଦୃଷ୍ଟିରେ ଓଡ଼ିଶାର କୃଷକସେନାନୀ ହସ ହସ ମୁଖରେ ଲୁଣ ଆଇନ ଅମାନ୍ୟ କରିଥିଲେ । ଲୁଣ ମହଣ ମହଣ ତିଆରି ହେଲା । ତାକୁ ପ୍ରକାଶ୍ୟ ଭାବରେ ଆଣି ବାଲେଶ୍ୱର

ସହରରେ ବିକି କରିବା ପାଇଁ ଗ୍ରାମବାସୀଙ୍କର ଜିଦ୍ ହେଲା । ସହସ୍ର ସହସ୍ର ଲୋକ ମହଣ ମହଣ ଲୁଣକୁ ମଝିରେ ରଖି ବ୍ୟୁହାକାରରେ ଶୋଭାଯାତ୍ରା କରି ବାଲେଶ୍ୱର ଆଣିଲେ । ୧୩ ମାଇଲ ରାସ୍ତା ଲାଠି ପ୍ରହାର ମଧ୍ୟରେ ବେ-ଆଇନ ଲୁଣ ଆସି ବାଲେଶ୍ୱରରେ ବିକି ହେଲା । ୧୭ ତାରିଖ ଦିନ ସୁନ୍ଦରୀଛକ-ଠାରେ ଲୁଣ ଶୋଭାଯାତ୍ରାରେ ଯେ ପ୍ରହାର ହୋଇଥିଲା ତାହା ଚିରଦିନ ଓଡ଼ିଶା ପକ୍ଷରେ ଗୌରବମୟ ହୋଇ ରହିଥିବ । ନିରୀହ ଜନତା, ଅସ୍ତ୍ର ନାହିଁ, ଶସ୍ତ୍ର ନାହିଁ, ନିଜ ଘରପାଖ ଲୁଣ ଟିକିକ ମାରିବା ପାଇଁ ଦାବୀ କରୁଛନ୍ତି ତାହାର ଫଳରେ ସେମାନେ ଏପରି ଭାବରେ ପ୍ରହୃତ ହୋଇଥିଲେ ଯେ ପ୍ରାୟ ସମସ୍ତେ ଅଚେତନ ହୋଇ ଯାଉଥିଲେ । ସୁନ୍ଦରୀଗ୍ରାମର ସ୍ତ୍ରୀଲୋକେ ଏମାନଙ୍କୁ ଯେପରି ଭାବରେ ଶୁଶ୍ରୂଷା କରିଥିଲେ ସେ ଦୃଶ୍ୟ ବର୍ଣ୍ଣନା କରିବା କଠିନ ।

ଶ୍ରୀମତୀ ରମାଦେବୀ ଓ ଶ୍ରୀମତୀ ମାଳତୀ ଦେବୀଙ୍କ ନେତୃତ୍ୱରେ ଶତ ଶତ ସ୍ତ୍ରୀ ଲୋକେ ମଧ୍ୟ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ଓଡ଼ିଶା ନାରୀ ଆନ୍ଦୋଳନର ଏହି ଆରମ୍ଭ । ଶ୍ରୀମତୀ ସରଳା ଦେବୀ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଗସ୍ତ କରି ସତ୍ୟାଗ୍ରହ ବାର୍ତ୍ତା ପ୍ରଚାର କରିଥିଲେ ।

୧୮ ତାରିଖ ଦିନ ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଡାକ୍ତର ଶ୍ରୀ କୃଷ୍ଣପ୍ରସାଦ ମହାନ୍ତି ଓ ଲେଖକ ବାଲେଶ୍ୱରରେ ଗିରଫ୍ତାର ହେଲେ । କ୍ରମଶଃ ସତ୍ୟାଗ୍ରହର କ୍ଷେତ୍ର ବହୁ ବିସ୍ତୃତ ହୋଇଗଲା । ଶ୍ରୀ କରୁଣାକର ପାଣିଗ୍ରାହୀ, ଶ୍ରୀ ନୀଳାମ୍ବର ଦାସ, ଶ୍ରୀ ବିଶ୍ୱନାଥ ହୋତା ଓ ଶ୍ରୀ ଭଗବତ ସାହୁଙ୍କ ଯୋଜନାକ୍ରମେ ବାଲେଶ୍ୱରର ସମସ୍ତ ଉପକୂଳ କ୍ରମଶଃ ସତ୍ୟାଗ୍ରହର କ୍ଷେତ୍ର ହୋଇଗଲା । ତେଣେ

କଟକ ଜିଲ୍ଲା କୁଜଙ୍ଗରେ ଲୁଣ ସତ୍ୟାଗ୍ରହ ଆରମ୍ଭ ହେଲା । କୁଜଙ୍ଗର ଭୂତପୂର୍ବ ରାଣୀ ଏ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ପୁରୀଜିଲ୍ଲା କାକଟପୁର ଅଞ୍ଚଳରେ ଶ୍ରୀ ଜଗନ୍ନାଥ ରଥଙ୍କ ଯୋଜନାକ୍ରମେ ସତ୍ୟାଗ୍ରହ ଲାଗିଲା । ଗଞ୍ଜାମ ଜିଲ୍ଲାରେ ଶ୍ରୀ ନିରଞ୍ଜନ ପଟ୍ଟନାୟକଙ୍କର ଯୋଜନାନୁସାରେ ଲୁଣ ସତ୍ୟାଗ୍ରହ ହେଲା । ହୁମ୍ମା ଓ ଗଞ୍ଜାମର ଗ୍ରାମବାସୀମାନେ ନିଜ କୁଣ୍ଡଳା ବଳରେ ଲୁଣ ଆଇନକୁ ରଦ୍ଦ କରିଦେଲେ । ଲୁଣ ଆଇନ ରଦ୍ଦ ହେଲା । ଇତିମଧ୍ୟରେ ପ୍ରଧାନ ପ୍ରଧାନ କର୍ମୀମାନେ ଜେଲ୍ ଗଲେ, ଲୋକଙ୍କର ସମସ୍ତ ଉତ୍ସାହ ଉତ୍ତେଜନା ଯଥାଯଥ ନିୟନ୍ତ୍ରିତ ହୋଇ ପାରିଲା ନାହିଁ । ଏହିଠାରେ ଯେତିକି ସେ ସମୟକାର ଦୋଷ କହି ରଖିଲେ ଅପ୍ରାସଙ୍ଗିକ ହେବ ନାହିଁ । ଜନସାଧାରଣଙ୍କ ମଧ୍ୟରେ ନେତୃତ୍ୱ କରିବାର ଲୋକଙ୍କ ସଂଖ୍ୟା ଅତି କମ୍ । ଏକଥା ୧୯୩୩ ସାଲରେ ମହାତ୍ମା ଗାନ୍ଧୀ ମଧ୍ୟ କହିଛନ୍ତି । ତେଣୁ ଗୁଡ଼ାଏ ଉତ୍ସାହ ମଧ୍ୟ ଅନେକ ସମୟରେ କାର୍ଯ୍ୟରେ ଆସେ ନାହିଁ । ଲୁଣ ସତ୍ୟାଗ୍ରହ ପରେ ଓଡ଼ିଶାରେ ଯେ ଅନୁଭବ ହେଲା ସେଥିରୁ ମଧ୍ୟ ତାହା ହିଁ ଜଣାପଡ଼ିଲା । ଖଜୁରି ଗଛରୁ ତାଡ଼ି ହୁଏ, ଗୁଡ଼ ବି ହୁଏ । କିନ୍ତୁ ତାଡ଼ିଖିଆ ବନ୍ଦ କରିବା ଉଦ୍ଦେଶ୍ୟରେ ଖଜୁରି ଗଛଗୁଡ଼ାକ ଖୁବ୍ ଉତ୍ସାହ ସହକାରରେ ହୁମ୍ମା ଓ ଗଞ୍ଜାମର ହଣା ହେଲା । ଏଥିପାଇଁ ବହୁଦିନ ପର୍ଯ୍ୟନ୍ତ ଅନେକ ସ୍ଥଳରେ ସ୍ୱଜ୍ଞାସ୍ୱଜ୍ଞ ମୋକଦ୍ଦମା ମଧ୍ୟ ଚାଲିଲା । ଇଞ୍ଚୁଡ଼ି ପ୍ରଭୃତି ୧୩ ଖଣ୍ଡ ଗ୍ରାମ ଯେଉଁମାନେ ଲୁଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ ଓ କାର୍ଯ୍ୟତଃ ଲୁଣ ଆଇନ ରଦ୍ଦ କରି ଦେଇଥିଲେ ସେହି ଗ୍ରାମମାନଙ୍କରେ ଚୌକିଦାରୀ ଟିକସ୍ ବନ୍ଦ ଆନ୍ଦୋଳନ ଚାଲିଲା । ଏଥିପାଇଁ

କୌଣସି ପ୍ରକାର ଆୟୋଜନ ବା ତିଆରି କାମ ହୋଇ ନଥିଲା । ଫଳରେ ସେ ଆନ୍ଦୋଳନ ମଧ୍ୟ ହୋଇ ବନ୍ଦ ହେଲା । ଏହି ଆନ୍ଦୋଳନ ସମ୍ପର୍କରେ ଶ୍ରୀଜଙ୍ଗ ଗାମରେ ପୋଲିସ ଓ ଲୋକଙ୍କ ମଧ୍ୟରେ ଠିକଏ ସଂଘର୍ଷ ହୋଇଗଲା । ଫଳରେ ସମସ୍ତ ପୋଲିସ ତହିଁ ପରଦିନ ଶ୍ରୀଜଙ୍ଗରେ ପହଞ୍ଚିଲେ । ସେତେବେଳକୁ ଶ୍ରୀଜଙ୍ଗ ଗାମବାସୀ କେବଳ ସ୍ତ୍ରୀଲୋକମାନଙ୍କୁ ଛାଡ଼ି କାପୁରୁଷ ହୋଇ ପଳାଇ ଯାଇଥିଲେ । ମନଇଚ୍ଛା ଘର ଲୁଟପାଟ, ସ୍ତ୍ରୀମାନଙ୍କ ଉପରେ ଅତ୍ୟାଚାର ସବୁ ହୋଇଗଲା । ଶ୍ରୀଜଙ୍ଗର ଅଧିନାୟକ ଶ୍ରୀ ଗୌରମୋହନ ଦାସ ତାଙ୍କର ସହକାରୀ ଶ୍ରୀ ବିଦ୍ୟାଧର ରଥ ଏମାନଙ୍କର ସମସ୍ତ ସମ୍ପତ୍ତି ଲୁଟ ହୋଇଗଲା । ଲୁଟ୍‌ପାଟ୍ ହୋଇଥିବା ସମ୍ପତ୍ତି ସମସ୍ତର ମୂଲ୍ୟ ପ୍ରାୟ ୬୦ ହଜାର ଟଙ୍କା ହେବ । ଏସବୁ ହୋଇଗଲେ ସୁଦ୍ଧା ଉପରୋକ୍ତ ୧୩ ଖଣ୍ଡ ଗାଁଆରେ ସରକାର 'ପିଉନିଟିଭ୍ ପୋଲିସ୍' ବସିଲା । ଲୁଣ ସତ୍ୟାଗ୍ରହର ପ୍ରତିହିଂସା ସରକାର ନେବାକୁ କୃତସଂକଳ୍ପ ହେଲେ । କ୍ରମଶଃ ଉପଯୁକ୍ତ ପରିଚାଳନା ଅଭାବରୁ ସତ୍ୟାଗ୍ରହ ଗ୍ରାମବାସୀମାନଙ୍କ ମଧ୍ୟରୁ ବାହାରି ଆସି ସହରରେ ଆବଦ୍ଧ ରହିଲା । ଉପରୋକ୍ତ ସମାଲୋଚନାରୁ କେହି ଯେପରି ମନେ ନ କରନ୍ତୁ ଯେ ଭାରତର ସ୍ୱାଧୀନତା ଯୁଦ୍ଧ ଶିଥିଳ ହୋଇ ପଡ଼ିଲା ନାଁ ତାହା ନୁହେଁ । ସହରରେ ବିଦେଶୀ ଲୁଗା ଦୋକାନ, ନିଶା ଦୋକାନ ପିକେଟିଂ, ବେ-ଆଇନ ପୁସ୍ତକମାନ ଛପାଇବା ଏସବୁ ବଧିବଦ୍ଧ ଭାବରେ ଚାଲିଲା । ବଡ଼ଲାଟ ଅର୍ଡିନେନ୍‌ସ ଉପରେ ଅର୍ଡିନେନ୍‌ସ ଜାରି କଲେ । କଟକରେ 'ସମାଜ' ଖବର କାଗଜ ଓ ବାଲେଶ୍ୱରର 'ପ୍ରଜାତନ୍ତ୍ର'କୁ ଜାମିନ୍ ମଗାଗଲା, ଏମାନେ ଜାମିନ୍ ନଦେଇ

ଖବର କାଗଜ ପ୍ରକାଶ ବନ୍ଦ କରିଦେଲେ । ଯେଉଁମାନେ କଂଗ୍ରେସ ଲୋକଙ୍କୁ ଆଶ୍ରୟ ଦେଲେ ସେମାନଙ୍କୁ ଜେଲ୍ ଜରିମାନା ହେଲା । କଂଗ୍ରେସର ସବୁ ବେଆଇନ ହେଲା । ଲଠି ପ୍ରହାର କମିଯାଇ ଜେଲ୍ ଦେବା ବେଶୀ ହେଲା । ଓଡ଼ିଶାରୁ ପ୍ରାୟ ୩୦୦୦ ଜେଲ୍ ଗଲେ । ବହୁ ଲୋକଙ୍କୁ ଜରିମାନା ହେଲା । ପୂର୍ଣ୍ଣ ବର୍ଷେକାଳ ଅବିରାମ ଯୁଦ୍ଧ ଲାଗି ରହିଥାଏ । ସରକାର ଓ ଲୋକେ ଉଭୟ ଥକା ପଡ଼ିଲେ । ଅବଶେଷରେ ସରକାର ନିଖିଳ ଭାରତ କାର୍ଯ୍ୟକାରୀ କମିଟିର ସମସ୍ତ ସଭ୍ୟମାନଙ୍କୁ ବିନା ସର୍ତ୍ତରେ ମୁକ୍ତ ଦେଲେ । ତା'ପରେ ସରକାରଙ୍କ ସହିତ କଂଗ୍ରେସର ଅସ୍ଥାୟୀ ସନ୍ଧି ହେଲା । ସେହିସନ୍ଧି ଫଳରେ ମହାତ୍ମା ଗାନ୍ଧୀ ବିଲାତରେ ବସୁଥିବା 'ଗୋଲଟେବୁଲ୍' ସଭାକୁ ଗଲେ । ସେ'ତ ଫଳ କିଛି ହେଲା ନାହିଁ । ସେ ପରକଥା । ମାତ୍ର ଏହି ଲବଣ ସତ୍ୟାଗ୍ରହରେ ଓଡ଼ିଶା ପୂରାମାତ୍ରାରେ ଯୋଗଦେଇ ଯୋଦ୍ଧା ହିସାବରେ ଦକ୍ଷତା ଦେଖାଇ ଅଛି । ଏ କଥା ବିହାର ଓଡ଼ିଶା ସରକାର ମଧ୍ୟ ତାଙ୍କ ୧୯୩୦-୧୯୩୧ ବାର୍ଷିକ ରିପୋର୍ଟରେ ସ୍ୱୀକାର କରିଛନ୍ତି । ପ୍ରଦେଶ ମଧ୍ୟରେ ଇଞ୍ଚେ ଛଡ଼ା, ଅନ୍ୟତ୍ର କେଉଁଠି ଗାଁ ଗାଁକୁ ଆଇନ ଅମାନ୍ୟ କାର୍ଯ୍ୟ ନଥିଲା । ଏ ତ ଯୁଦ୍ଧ ବେଳର ଖବର । ବର୍ତ୍ତମାନ ବିଚାର କରିବାକୁ ହେବ ଏ ଯୁଦ୍ଧରେ ଯୋଗଦେଇ ଓଡ଼ିଶାର ଲାଭ ହୋଇଛି କି କ୍ଷତି ହୋଇଛି ।

# ଷୋହଳ

୧୯୩୦ ସାଲ ସତ୍ୟାଗ୍ରହରେ ଇଂରାଜୀ ଶିକ୍ଷିତ ଲୋକ ଯେପରି ଭାବରେ ଯୋଗ ଦେଇ ନ ଥିଲେ ଯେପରିକି ସାଧାରଣ ଚାଷୀ । ଶିକ୍ଷିତ ଲୋକଙ୍କ ମଧ୍ୟରେ ସାମନ୍ତ ଭାଗବତପ୍ରସାଦ ମହାପାତ୍ର ଲାଟସଭାରୁ ଇସ୍ତଫା ଦେଇଥିଲେ । ବାଲେଶ୍ୱରର ଶ୍ରୀ ପ୍ରିୟନାଥ ସରକାର ଓ ଶ୍ରୀ ଗୋଲକନାଥ ଦେ ଓ କଟକର ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଏହି ତିନିଜଣ ନୂଆ ଓକିଲ ଯୋଗ ଦେଇଥିଲେ । ବାଲେଶ୍ୱରର ଓକିଲ ଗୁରୁଚନ୍ଦ୍ର ରାୟ ଓ ମୁକ୍ତାର ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ ସତ୍ୟାଗ୍ରହକୁ ସାହାଯ୍ୟ କରି ବଡ଼ ହଇରାଣରେ ପଡ଼ିଥିଲେ । କଲେଜରୁ ୩ ଜଣ ମାତ୍ର ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ସମୁଦାୟ ଓଡ଼ିଶାରୁ ସ୍କୁଲଛାତ୍ର ୨୦ ଜଣରୁ ବେଶୀ ଯୋଗଦେଇ ନଥିଲେ । କିନ୍ତୁ ଚାଷୀ, ଯାହାକୁ ଶିକ୍ଷିତ ଲୋକେ ହେୟ ମନେ କରନ୍ତି ସେମାନେ ସହସ୍ର ସଂଖ୍ୟାରେ ଦେଶର ସ୍ୱାଧୀନତା ପାଇଁ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ଅନ୍ୟ ପ୍ରଦେଶମାନଙ୍କରେ ବିଶେଷତଃ ବଙ୍ଗ ଦେଶରେ ଛାତ୍ରସମାଜ ବିଧିବଦ୍ଧ ଭାବରେ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ଓଡ଼ିଶାର ଶିକ୍ଷିତ ମଣ୍ଡଳୀରେ ଜାତୀୟତା ଭାବ କ୍ଷୀଣ ଏଥିରୁ ବେଶ୍ ପ୍ରତିପନ୍ନ ହେବ । ସେ ଯାହାହେଉ ବର୍ତ୍ତମାନ ଦେଖାଯାଉ ସତ୍ୟାଗ୍ରହରେ ଲାଭାଲାଭ କଅଣ ହୋଇଛି ।

ସତ୍ୟାଗ୍ରହରେ ତିନିହଜାର ଖଣ୍ଡେ ଲୋକ ଜେଲ ଗଲେ । ଅସଂଖ୍ୟ ଲୋକ ଲାଠି ମାଡ଼ ଖାଇଲେ । ଜରିମାନା ଓ ଲୁଟ ସବୁ ଲଗାଇ ପ୍ରାୟ ଦୁଇଲକ୍ଷ ଟଙ୍କା ଲୋକଙ୍କର ବରବାଦ ହେଲା ।

ବର୍ଷେକାଳ ଅତି ଅସ୍ଥିରତା ମଧ୍ୟରେ ଦେଶ କାଳ କଟାଇଲା । ସେଥିପାଇଁ ବ୍ୟବସାୟ ବାଣିଜ୍ୟରେ କ୍ଷତି ହୋଇଥିବା କେତେକ ସ୍କୁଲ କଲେଜ ଓ ଉତ୍କଳିତ ଗୃହ କ୍ଷତିଗ୍ରସ୍ତ ହେଲେ । ଏହା ହେଉଛି କ୍ଷତିର ପାଖ । ବର୍ତ୍ତମାନ ଲାଭର ପାଖ ଦେଖାଯାଉ ।

ଗାନ୍ଧୀ ଇରଉଇନ୍ ବା କଂଗ୍ରେସ ଇଂରେଜ ସରକାରଙ୍କର ଚୁକ୍ତି ଅନୁସାରେ ଗରିବ ଲୋକେ ଲୁଣମାରି ଖାଇବାର ଅଧିକାର ପାଇଲେ ଓ ନିଜ ନିଜ ମଧ୍ୟରେ ବିକ୍ରି କରିବାର ମଧ୍ୟ କିଞ୍ଚିତ ସୁବିଧା ପାଇଲେ । ଅବଶ୍ୟ ଏଥିରେ ପୂରାପୂରି ଲୋକଙ୍କ ଦାବୀ ରକ୍ଷା ହେଲାନାହିଁ । ଓଡ଼ିଶା ତାର ଲୁଣ ବ୍ୟବସାୟ ଫେରି ପାଇଲା ନାହିଁ । ହୁଏତ ସେଥିପାଇଁ ପୁଣି ତାଙ୍କୁ ଲଢ଼ାଇ କରିବାକୁ ପଡ଼ିପାରେ । ମାତ୍ର ଯେତିକ ପାଇଛି ସେଇଥିରେ ସହସ୍ର ସହସ୍ର ଲୋକ ବର୍ତ୍ତମାନ ଜୀବିକାର୍ଜନ କରୁଛନ୍ତି । ବାସୁଦେବପୁର ଥାନା, ବାଲିଆପାଳ ଥାନା, ସିଂଲା ଥାନାର କେତୋଟି ଅଞ୍ଚଳ ବୁଲି ଆସିଲେ ଯେ କୌଣସି ଲୋକ ଏହା ବୁଝିପାରିବ । ଅବଶ୍ୟ ସେ ଗାନ୍ଧୀ ଇରଉଇନ୍ ଚୁକ୍ତିକୁ ନାରିପାଖ ବାଡ଼ିବେଡ଼ି ଖର୍ବ କରିବାର ଉଦ୍ୟମ ହେଉଛି । ସେଥିପାଇଁ ଲୋକଙ୍କୁ ସଚେତ ରହିବାକୁ ପଡ଼ିବ । ମାତ୍ର ବର୍ତ୍ତମାନ ଯେ ସହସ୍ର ସହସ୍ର ଲୋକ ଲୁଣ ମାରିରୁ ପେଟ ପୋଷି ବଞ୍ଚୁଛନ୍ତି ଏଥିରେ ସନ୍ଦେହ ନାହିଁ ।

ଦୁଇରେ ଓଡ଼ିଶାର ନାରୀ ଜାଗରଣ ଏ ସତ୍ୟାଗ୍ରହ ହେତୁ ହୋଇଅଛି । ୧୯୨୧ ସାଲ ଆନ୍ଦୋଳନ ଫଳରେ ଏକମାତ୍ର ଶ୍ରୀମତୀ ସରଳା ଦେବୀ ବହୁ ଅସୁବିଧା ମଧ୍ୟରେ ନିଜକୁ ନିଜେ ଟେକି ରଖି ପାରିଥିଲେ । ମାତ୍ର ବର୍ତ୍ତମାନ ଓଡ଼ିଶାରେ ଯେଉଁଭଳି ନାରୀ ଜାଗରଣ ଘଟିଅଛି, ବିହାରରେ ମଧ୍ୟ ସେପରି ହୋଇନାହିଁ । ନାରୀ କର୍ମୀ ଆଜ ଓଡ଼ିଶାରେ ମୁଖ୍ୟକର୍ମୀ—ଶତବର୍ଷ ଚେଷ୍ଟା

କରିଥିଲେ ଏ ଜାଗରଣ ଘଟିପାରି ନଥାନ୍ତା; ଏକ ସତ୍ୟାଗ୍ରହରେ ଯାହା ଘଟିଅଛି । ଡିନରେ ସାଧାରଣ ଜାଗରଣ—ଦଶବର୍ଷ ପୂର୍ବେ ଓଡ଼ିଶାରେ ଲୋକେ ଖ୍ରାଜମାଣ୍ଡ ପ୍ରତି ପୃଷ୍ଠି ଅବହେଳା ପ୍ରକାଶ କରୁଥିଲେ । ଏପରିକ 'ସମାଜ' କେବଳ ମାତ୍ର ସାପ୍ତାହିକ ପତ୍ରିକା ଥିଲା ଯାହା ଜାଣ୍ଟପୁଡ଼ାବାଗ ଥିଲା । କିନ୍ତୁ ୧୯୩୦ ସତ୍ୟାଗ୍ରହ ପରେ ତିନୋଟି ଜାଣ୍ଟପୁଡ଼ାବାଗ ଦୈନିକ କାଗଜ ଓଡ଼ିଶାରେ ଚାଲିଥିଲା । (୧) ଆଶା (ଏ ସମ୍ବାଦପତ୍ର ୧୯୩୦ ସାଲ ପୂର୍ବରୁ ବାହାରି ଥିଲେ ମଧ୍ୟ କଂଗ୍ରେସ ଆନ୍ଦୋଳନର ଫଳ ବୋଲି ଜାଣିବାକୁ ହେବ) (୨) ସମାଜ (୩) ପ୍ରଜାତନ୍ତ୍ର । ଏତେଗୁଡ଼ିଏ ଦୈନିକ ସମ୍ବାଦପତ୍ର ଯେ ଓଡ଼ିଶାରେ କେବେହେଲେ ଚାଲି ପାରିବ ଏହା ପୂର୍ବରୁ ସ୍ୱପ୍ନପରି ଜଣା ଯାଉଥିଲା ।

ସତ୍ୟାଗ୍ରହରେ ଯେଉଁ ଓକିଲ ଓ ଛାତ୍ରମାନେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରୁ ଅନେକ ସ୍ୱ ସ୍ୱ ସ୍ଥାନକୁ ଚାଲିଗଲେ । ସେ ମଧ୍ୟ ନିନ୍ଦାର ବିଷୟ ନୁହେଁ । ଦେଶବ୍ୟାପୀ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେବା ଓ ଜୀବନବ୍ୟାପୀ ଦେଶସେବାକୁ ବ୍ରତ କରିବା ଏ ଦୁଇଟି ଭିନ୍ନ ଜିନିଷ । ଏ ଦୁଇଟିକୁ ଏକ ବୋଲି ଧରିନେଇ ଅନ୍ତତଃ ଓଡ଼ିଶା କଂଗ୍ରେସ ମହଲରେ ଓ ସାଧାରଣ କାର୍ଯ୍ୟ କ୍ଷେତ୍ରରେ ଆଦର୍ଶର ବିଭ୍ରାଟ ଘଟିଅଛି । ଏହି ସମ୍ପର୍କରେ ଅନ୍ୟ ଦେଶର କାର୍ଯ୍ୟକଳାପ ଆଲୋଚନା କଲେ ଜଣାଯିବ, ଯେତେବେଳେ ଦେଶ ଦେଶ ମଧ୍ୟରେ ଯୁଦ୍ଧଲାଗେ ସେତେବେଳେ ସ୍ୱଦେଶ ପାଇଁ ପ୍ରାଣ ପର୍ଯ୍ୟନ୍ତ ଦେବାକୁ ବିଶ୍ୱବିଦ୍ୟାଳୟ ସବୁ ଖାଲି କରିଦେଇ ଯୁବକ ଦୌଡ଼ି ଆସେ । ଚାକିରି, ବାକିରି, ବେଉସା, ବାଣିଜ୍ୟ, ଚାଷ, ଘରସବୁ ଛାଡ଼ିଦେଇ ସ୍ୱଦେଶ ରକ୍ଷା

କରିବାକୁ ଲୋକ ଦୌଡ଼େ । ଏମାନଙ୍କର ମଧ୍ୟଭୁକ୍ତ ଅଛି । ଏମାନଙ୍କର କୀର୍ତ୍ତିରେ ଇତିହାସ ଗୌରବାନ୍ୱିତ । ଏ ସମସ୍ତଙ୍କୁ ଯୁଦ୍ଧ ପରେ ସୁଦ୍ଧା ଚିର ଜୀବନ ପାଇଁ ଦରିଦ୍ରତାବ୍ରତ ଅବଲମ୍ବନ କରି ଲୋକ ସେବାରେ ଲାଗିବାକୁ ଆଶା କରିବା ଅନ୍ୟାୟ୍ୟ ଓ ସେପରି ଆଶା କରିବା ଫଳରେ ଏମାନେ ଯୁଦ୍ଧ ପରେ ଯେତେବେଳେ ସ୍ୱ ସ୍ଥାନକୁ ଚାଲି ଯାଆନ୍ତି ସେମାନଙ୍କ ପ୍ରତି ଟିକିଏ ହୀନଭାବ ଜାତ ହେବାର କଥା । ଆଜି ଯେଉଁମାନେ ଭାରତର ସ୍ୱାଧୀନତା ଯୁଦ୍ଧରେ ନିଜ ନିଜର ଉପସ୍ଥିତି କାର୍ଯ୍ୟ ଗୁଡ଼ି ଯୋଗ ଦେଇଥିଲେ ସେମାନେ ସମସ୍ତେ ଧନ୍ୟ । ସେମାନେ ଦେଶର ଗୌରବ ରକ୍ଷା କରିଛନ୍ତି । ସେମାନଙ୍କର କୀର୍ତ୍ତିରେ ଇତିହାସ ଉଜ୍ଜ୍ୱଳ । ଯୁଦ୍ଧ ପରେ ସେମାନେ ଯେ ପୁଣି ସେମାନଙ୍କ କାମକୁ ଫେରି ଯାଇଛନ୍ତି, ଏହା ନିତାନ୍ତ ସ୍ୱାଭାବିକ ଓ ଏତଦ୍ୱାରା ସେମାନଙ୍କର କର୍ତ୍ତବ୍ୟପରାୟଣତା ବା ଗୌରବର ଟିକିଏ ହେଲେ କ୍ଷତି ହୋଇ ନାହିଁ । ଯେଉଁମାନେ ଯୁଦ୍ଧରେ ଯୋଗଦେବା ପରେ ନିଜ ନିଜର ଜୀବନର ଗତି ଫେରାଇ ଦେଇଛନ୍ତି ଓ ଆଜୀବନ ଦେଶ କାର୍ଯ୍ୟବ୍ରତୀ ହୋଇଛନ୍ତି ସେମାନେ ନମସ୍ୟ ଓ ଆଦର୍ଶ ଏହା କୋଲିବା ନିଷ୍ପ୍ରୟୋଜନ । ୧୯୩୦ ସତ୍ୟାଗ୍ରହ ଫଳରେ ଦେଶ ସେହିପରି କେତେକ କର୍ମୀ ପାଇଛି । ୧୯୨୧ ସାଲର ଅସହଯୋଗ ଆନ୍ଦୋଳନ ଓ ୧୯୩୦ର ସତ୍ୟାଗ୍ରହ ନ ହୋଇଥିଲେ ଓଡ଼ିଶାରେ ବୋଧହୁଏ ଜଣେ ସୁଦ୍ଧା କର୍ମୀ ନ ଥାଆନ୍ତେ । ଓଡ଼ିଶାର ନାନା ବିଭାଗରେ ଆଜି ଯେଉଁମାନେ କାମ କରୁଛନ୍ତି ସେମାନେ ଏହି ଆନ୍ଦୋଳନମାନଙ୍କରୁ ପ୍ରେରଣା ପାଇଥିଲେ । ଭାରତୀୟ ଜାତୀୟ ଆନ୍ଦୋଳନରେ ଓଡ଼ିଶା ଯୋଗଦେଇ ଏହି ଶ୍ରେଷ୍ଠଫଳ ସେ ପାଇଛି—ଅନ୍ୟ ସବୁକୁ ବାଦ୍ ଦେଲେ ମଧ୍ୟ ।

# ସତର

୧୯୩୦ ସାଲ ପରେ ଆଜ ପର୍ଯ୍ୟନ୍ତ ଓଡ଼ିଶାର ରାଜନୈତିକ ଘଟଣା ସମସ୍ତେ ଜଣା ଅଧିକେ ଜାଣିଥିବେ । ସଂକ୍ଷେପରେ ଏତିକି କୁହାଯାଇପାରେ ଯେ ୧୯୩୧ରେ ଓଡ଼ିଶାରେ ରାଜନୈତିକ ଓ ସାଧାରଣ ଜୀବନରେ ଶକ୍ତି ଏତେ ବଢ଼ିଥିଲା ଯେ, ନିଖିଳ ଭାରତ କଂଗ୍ରେସର ଅଧିବେଶନକୁ ଓଡ଼ିଶା ନିମନ୍ତ୍ରଣ କରି ପୁରୀରେ ଅନୁଷ୍ଠିତ କରାଇବାର ଉଦ୍ୟମ କରିଥିଲା । ଚାରିଆଡ଼େ ମହା ଉତ୍ସାହ ଓ ଶୃଙ୍ଖଳା ପ୍ରକାଶ ପାଇଥିଲା । ମନେ ରଖିବାକୁ ହେବ ଲୋକଙ୍କୁ ସଂଗଠିତ କରିବା ପାଇଁ କୌଣସି ପ୍ରକାର ରଚନାତ୍ମକ କାର୍ଯ୍ୟ କରାଯାଇ ନ ଥିଲା । ତେଣେ ଭାରତର ସ୍ୱାଧୀନତା ଯୁଦ୍ଧରେ ମୂଳପୋଛ ପାଇଁ ଇଂରେଜ ରାଜଶକ୍ତି ଯେତେ ପ୍ରକାର ଆୟୋଜନ କରିବାର କଥା କରି ରଖିଥିଲା । ସରକାର କଂଗ୍ରେସ ସନ୍ଧି ଫଳରେ ମହାତ୍ମାଜୀ ବିଲାତ ଯାଇଥିଲେ । ସେଠାରେ ସେ ଭାରତୀୟଙ୍କ ଦାବୀ ପରିଷ୍କାର ଭାବେ କହି ବିଫଳ ମନୋରଥ ହୋଇ ଫେରୁଣୁ ନ ଫେରୁଣୁ କଂଗ୍ରେସ ଉପରେ ଆକ୍ରମଣ ହେଲା । ଯେତେ ପ୍ରକାର ଦମନ ନୀତି ପ୍ରୟୋଗ କରାଯିବାର କଥା, କରାହେଲା । କଂଗ୍ରେସ

ପ୍ରଥମ ଅବସ୍ଥାରେ ଖୁବ୍ ସମ୍ଭାଳ ଥିଲା । ଦୁଇବର୍ଷ ବ୍ୟାପୀ ସଂଗ୍ରାମର ଶେଷରେ କଂଗ୍ରେସ ପରାଜିତ ହେଲା । ସତ୍ୟାଗ୍ରହ ବନ୍ଦ ହେଲା । ଅବଶ୍ୟ ଏ ପରାଜୟ ଭବିଷ୍ୟତ ଜୟ ପାଇଁ । ଏ ପରାଜୟରୁ ବହୁତ ଶିକ୍ଷା ହୋଇଅଛି । ପରାଜୟର ଅପମାନ ଜାତିକୁ ଦ୍ୱିଗୁଣ କର୍ମଠ କରିବାର କଥା—ଯେପରି ଆମେରିକା ଦ୍ୱାରା ପରାଜିତ ହୋଇ ଜାପାନ ହୋଇଥିଲା । ବିଗତ ମହାଯୁଦ୍ଧରେ ପରାଜିତ ହୋଇ ଜର୍ମାନ ହୋଇଛି । ଏହି ସତ୍ୟାଗ୍ରହରେ କାରାବରଣକାରୀ ସଂଖ୍ୟାରେ ଜିଲ୍ଲା ହିସାବରେ ଓଡ଼ିଶାର ବାଲେଶ୍ୱର ଜିଲ୍ଲା ଭାରତରେ ଦ୍ୱିତୀୟ ହୋଇଥିଲା । ଯାହାହେଉ ସତ୍ୟାଗ୍ରହ ସ୍ଥଗିତ ହେବା ପରେ କଂଗ୍ରେସକୁ ସରକାର ଛାଡ଼ିବାକୁ ଦେଲେ । ଏଥର ଓଡ଼ିଶାରେ ରଚନାତ୍ମକ କାମ ପ୍ରତି ଟିକିଏ ଜୋର ଦିଆ ହେଉଅଛି । ଲୋକସଭା ରାଜନୀତି ଓ ତଥା ସମାଜବାଦ ରାଜନୀତି ମଧ୍ୟ ଓଡ଼ିଶାରେ ଅନ୍ୟ ପ୍ରଦେଶ ପରି ଚାଲିଛି । ଓଡ଼ିଶା ବର୍ତ୍ତମାନ ବନ୍ଧପ୍ରକୋଷ୍ଠ ନୁହେଁ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ଯାଇ ଥିବାରୁ ଲୋକସଭା ରାଜନୀତି ଧୀରେ ଧୀରେ ପୂରୁଣା ଧରଣର ଢଙ୍ଗ ଆଡ଼କୁ ଗତି କରୁଛି । ନୂତନ ପ୍ରଦେଶ ଯୋଗୁଁ କେତେ ପ୍ରକାର ଆଶା ଅଭିଳାଷ ଇଂରେଜୀ ଶିକ୍ଷିତ ଲୋକଙ୍କ ମନରେ ଜାଗିଛି । ଏହି ସ୍ୱତନ୍ତ୍ର ପ୍ରଦେଶର ପ୍ରକାଶ୍ୟ ଦାବୀ ପ୍ରଥମ ଗୋଲଟେବୁଲ ସଭାରେ ବିଲାତରେ ପାରଳାର ରାଜା ଉତ୍ଥାପନ କରିଥିଲେ । ହିନ୍ଦୁ ମୁସଲମାନଙ୍କୁ ଚିରଦିନ ସଂଟେଇକି ରଖିବାରେ ଇଂରେଜ ରାଜନୀତି ସର୍ବଦା ତତ୍ପର । ମୁସଲମାନ ପ୍ରଧାନ ସିନ୍ଧୁ ସେଇଥିପାଇଁ ସ୍ୱତନ୍ତ୍ର ପ୍ରଦେଶ ହେଲା । ଏଣେ ନିକିତିର ଦଣ୍ଡି ଠିକ୍ ରଖିବା ପାଇଁ ହିନ୍ଦୁ ପ୍ରଧାନ ଓଡ଼ିଶାକୁ ସ୍ୱତନ୍ତ୍ର କରାଗଲା ।

ଏଥିରେ ଓଡ଼ିଶାର ସମୂହ କ୍ଷତି, ଏକଥା ଅଳ୍ପଦିନେ ସମସ୍ତେ ବୁଝିବେ । ସ୍ୱତନ୍ତ୍ର ପ୍ରଦେଶ ପାଇଁ ଇଂରେଜୀ ଶିକ୍ଷିତ ଲୋକଙ୍କର ଆନନ୍ଦର ଧ୍ୱନି ମଧ୍ୟରେ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଲେଖକ ବରାବର ସତର୍କତାର ବାଣୀ ଶୁଣାଇ ଆସିଛନ୍ତି । କେହି ନ ଶୁଣିଲେ ମଧ୍ୟ ଏମାନେ ପ୍ରଚଳିତ ଶାସନ ନୀତିରେ ଓଡ଼ିଶାର ସ୍ୱତନ୍ତ୍ରୀକରଣ-ବିରୋଧରେ ମତ ଦେଇ ଆସିଛନ୍ତି । ଇଂଲଣ୍ଡ ଓ ଭାରତ ଏହା ଭିତରେ ଅତୀତ ବର୍ତ୍ତମାନ ଓ ଭବିଷ୍ୟତ ସମ୍ବନ୍ଧ ବିବେଚନା କରି ଇଂରେଜ ରାଜନୈତିକ-ମାନେ ଶାସନ ନୀତି ଚଳାଇଛନ୍ତି । ସେ ନୀତିର ସମୁଦାୟକୁ ବା କୌଣସି ଅଂଶକୁ ଦୈଶିକ ପକ୍ଷରୁ ସମର୍ଥନ ମିଳିଲେ ଦେଶର ସ୍ୱାଧୀନତାର ପ୍ରଶ୍ନ ଯେ କେଉଁଠି ଉଠିବ କହିବା କଠିନ । ଯାହାହେଉ ସେ ଅନ୍ୟ ପ୍ରଶ୍ନ । ଏହିଠାରୁ ପୁସ୍ତିକାର ଶେଷ ।

ପରିଶେଷରେ "ରୁଷିଆ ବିପ୍ଳବର ଇତିହାସ" ନାମକ ପୁସ୍ତକରେ ଟ୍ରଟ୍‌ସ୍କି ଲେଖିଛନ୍ତି "ଐତିହାସିକ ଘଟଣାମାନଙ୍କରେ ଜନସାଧାରଣଙ୍କର ପ୍ରତ୍ୟକ୍ଷ ହସ୍ତକ୍ଷେପ ବିପ୍ଳବର ଏକ ନିଃସନ୍ଦେହ ଲକ୍ଷଣ । ସାଧାରଣ ସମୟରେ ଶାସନତନ୍ତ୍ର ଯେକୌଣସି ଧରଣର ହେଉ ପଛକେ ଏହା ଜାତିଠାରୁ ଉଚ୍ଚ ସ୍ତରରେ ରହେ ଓ ସେଥିପାଇଁ ରାଜା, ମନ୍ତ୍ରୀ, ଦରବାରୀ, ସାମ୍ବାଦିକ ଏମାନେ ଇତିହାସ ଗଠନ କରନ୍ତି । କିନ୍ତୁ ଯେତେବେଳେ ପୁରାତନ ନୀତି ଜନସାଧାରଣଙ୍କ ପକ୍ଷରେ ଅସହ୍ୟ ହୋଇ ଉଠେ, ସେମାନଙ୍କୁ ରାଜନୈତିକ କ୍ଷେତ୍ରରୁ ଦୂରରେ ରଖି ଦେଉଥିବା ସମସ୍ତ ବାଧାକୁ ସେମାନେ ଟପି ଯାଆନ୍ତି । ସେମାନଙ୍କ କାଳଗତ ପ୍ରତିନିଧିମାନଙ୍କୁ

'ଫୋପାଡ଼ି ଦିଅନ୍ତୁ ଓ ନିଜେ ନିଜେ ଏକ ନୂତନ ମତର ମୂଳ ଭିତ୍ତି ସ୍ଥାପନ କରନ୍ତୁ ।''

ବିପ୍ଲବର ଉପରୋକ୍ତ ଲକ୍ଷଣ ବିବେଚନା କଲେ ଜଣାଯିବ ଯେ ୧୯୨୧ ସାଲରେ ଭାରତର ବାସ୍ତବିକ ଏକ ବିପ୍ଳବ ସଂଘଟିତ ହୋଇଥିଲା । କେତେ ପୁରୁଣା କଥା ପୁରୁଣା ଧାରଣା କେବଳ ଜନସାଧାରଣଙ୍କ ପ୍ରତ୍ୟକ୍ଷ ଜାଗରଣରେ ଭାସି ଚାଲିଗଲା । ତା'ପରେ ପୁଣି ନିଠସଭା ପ୍ରବେଶ ବିପ୍ଲବର ବିରୁଦ୍ଧଗାମୀ ହେଲା । ବିପ୍ଳବ ବିଷୟରେ ବିଶେଷଜ୍ଞ ଟ୍ରଟ୍‌ସ୍କି ଲେଖିଛନ୍ତି ''ଜନସାଧାରଣଙ୍କର ଅସନ୍ତୋଷକୁ ରାଜଦରବାରରେ ପ୍ରକାଶ କରି ଶାସନ ମତକୁ ତିରସ୍କାର କରିବା ଯନ୍ତ୍ର ଭିତରୁ ବାଷ୍ପ ବାହାର କରିଦେବା ପାଇଁ ବାଟ ଭଳି ।'' ଏଥିରୁ ସାମାଜିକ ସ୍ଥିତିର ଅଚଳତା ପ୍ରକାଶ ପାଏ । କିନ୍ତୁ ବିପ୍ଳବର ଲକ୍ଷଣ ଭିନ୍ନ ପ୍ରକାର ।

୧୯୩୦ର ସତ୍ୟାଗ୍ରହ ୧୯୨୧ର ଅସହଯୋଗର କ୍ରମବିକାଶ ମାତ୍ର । ସେଥିରେ ନୂତନତ୍ୱ କିଛି ନାହିଁ । ବରଂ ମଝି ସମୟରେ ନିଠସଭା ରାଜନୀତି ଦ୍ୱାରା ବହୁ ପରିମାଣରେ ସେ ଅସହଯୋଗ ବିକୃତ ଆକାରରେ ପ୍ରକାଶ ପାଇଲା । ୧୯୨୧ର ତ୍ୟାଗର ଭାବ ୧୯୩୦ରେ ବା ୧୯୩୨ରେ ରହିଲା ନାହିଁ । ଉଦ୍ଦାମ ଦେଶପ୍ରେମ ପରିବର୍ତ୍ତେ ବ୍ୟକ୍ତିଗତ ପ୍ରତିଷ୍ଠା ବେଶୀ ପରିମାଣରେ କାମ କଲା । ଏହାର କାରଣ ମଝିରେ ଯେଉଁ ତ୍ୟାଗ ବିହୀନ ସମୟରେ ନିଠସଭା କିବାଚନାଦି ହୋଇଗଲା, ପୁଣି ୧୯୩୨ ସତ୍ୟାଗ୍ରହ ପରେ ନିଠସଭା ରାଜନୀତିର ପ୍ରବେଶ ବିପ୍ଳବ ପକ୍ଷରେ ହାନିକାରକ—ଏଥିରେ ସନ୍ଦେହ ନାହିଁ । କଂଗ୍ରେସ ନିଠସଭା ରାଜନୀତିକୁ ଏକ ହାତରେ ଧରି ଅନ୍ୟ ହାତରେ ବିପ୍ଳବ ପତାକା

ଧରି ପାରିବ ଏହା ସମ୍ଭବ ନୁହେଁ । ଏଣୁ ଅନେକ ବିଚକ୍ଷଣ ଲୋକ ଭାବନ୍ତି ଯେ କଂଗ୍ରେସ ଆଉ ଭାରତର ସ୍ୱାଧୀନତା ସଂଗ୍ରାମରେ ନେତୃତ୍ୱ ନେଇ ପାରିବ ନାହିଁ । କଂଗ୍ରେସର ଗତି ଯାହା ହେଉ ପଛକେ ଦେଶର ସ୍ୱାଧୀନତା ସଂଗ୍ରାମ ପାଇଁ ଯେ ଉଦ୍ୟମ ରହିବ ଏଥିରେ ସନ୍ଦେହ ନାହିଁ । ସେ ଉଦ୍ୟମ ଦରକାର ପଡ଼ିଲେ ନୂତନ ସଂସ୍ଥା ସୃଷ୍ଟି କରିପାରେ ।

ସ୍ୱାଧୀନତା ସଂଗ୍ରାମର ସ୍ୱରୂପ ଯେପରି ହେଉ ପଛକେ ଏହା ନିଶ୍ଚୟ ଅହିଂସାତ୍ମକ ହୋଇ ରହିବ । ଆଧ୍ୟାତ୍ମିକ ଦୃଷ୍ଟିରୁ ତଥା ବ୍ୟାବହାରିକ ଦୃଷ୍ଟିରୁ ଏହା ଧ୍ରୁବସତ୍ୟ । ଭବିଷ୍ୟତରେ ସେ ସଂଗ୍ରାମର କି ଆକାର ଧରିବ ତାହା ଆଗରୁ କେହି କହି ପାରିବେ ନାହିଁ । ଆଗରୁ କଳ୍ପନା ଜଳ୍ପନା କରି କୌଣସି ବିପ୍ଳବ କେବେ ସଂଘଟିତ ହୋଇନାହିଁ । କିନ୍ତୁ ଏତିକି ଜାଣି ରଖିବାକୁ ହେବ ଯେ ଜନସାଧାରଣଙ୍କୁ ଅହିଂସା ବାଟରେ ତିଆରି କରାଇବା ସ୍ୱାଧୀନତାକାମୀଙ୍କର ଏକମାତ୍ର କାମ । ୧୯୨୧ ସାଲରେ ମହାତ୍ମା ଗାନ୍ଧୀ ସତ୍ୟାଗ୍ରହ ପାଇଁ ଯେ ସର୍ତ୍ତସବୁ ଦେଇଥିଲେ ସେ କଥା ସ୍ମରଣ କଲେ ଆଜ ସେ ସବୁର ଆବଶ୍ୟକତା ପରିଷ୍କାର ଭାବରେ ଜଣାପଡ଼େ । ଦେଶର ସେ ସମ୍ପ୍ରଦାୟଗତ ଭେଦ, କେବଳ ହିନ୍ଦୁ ମୁସଲମାନ ମଧ୍ୟରେ ନୁହେଁ — ହିନ୍ଦୁ ମଧ୍ୟରେ ଭିନ୍ନ ଭିନ୍ନ ଜାତି ଭେଦ ମଧ୍ୟରେ ସ୍ୱାଧୀନତା ପାଇଁ ଏକ ପ୍ରଧାନ ଅନ୍ତରାୟ— ଏଥିରେ ସନ୍ଦେହ ନାହିଁ । ଅସ୍ପୃଶ୍ୟତା ନିବାରଣ ତ ଆରମ୍ଭ ମାତ୍ର ସମ୍ପ୍ରଦାୟ ଜାତି ପ୍ରଥା ବିରୋଧରେ ଜନମତ ସଂଗଠିତ ହେବା ଦରକାର । ବହୁ ବର୍ଷ ପରାଧୀନତା ଫଳରେ ଜନତା ଆତ୍ମବିଶ୍ୱାସ ହରାଇଛି । ସେତିକି ସେମାନଙ୍କ ମନରେ ଅଣାଇବା ଆବଶ୍ୟକ ।

ବଡ଼ ବଡ଼ ଦେଶବ୍ୟାପୀ ଆନ୍ଦୋଳନର କଳ୍ପନା ନକରି ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଉପରୋକ୍ତ କାର୍ଯ୍ୟମାନ କଲେ ସ୍ୱାଧୀନତା ଦିଗରେ ଯଥେଷ୍ଟ କାମ ହେବ । ଖବର ପ୍ରଚାର, ଚିନ୍ତାର ପ୍ରସାର ଅବଶ୍ୟ ଆବଶ୍ୟକ । ମାତ୍ର ଭିତରର କର୍ମଶକ୍ତି ଏତେ ଗଭୀର ହୋଇଛି ଯେ ତାକୁ ପରିଶ୍ରମ କରି ଜାଗରୁକ ନ କରାଇଲେ କେବଳ କଥାରେହିଁ ସବୁ ରହିଯିବ । ଗୁଡ଼ାଏ ଘଟଣା ଘଟିଯିବ । ତା ପରେ ସେସବୁକୁ ବିଶ୍ଳେଷଣ କରି ସେଥିରୁ ଦର୍ଶନ ବାହାର କରିବା ଏକ କାମ । ମାତ୍ର ସେ ଘଟଣାଗୁଡ଼ିକୁ ସୃଷ୍ଟି କରିବା ଭିନ୍ନ କାମ । ଲେଖକର ମତରେ ମହାତ୍ମା ଗାନ୍ଧୀହିଁ ଏକମାତ୍ର ବ୍ୟକ୍ତି, ଯାହାଙ୍କ ଠାରେ ଗୁଡ଼ାଏ ଘଟଣା ସୃଷ୍ଟି କରାଇବାର ଶକ୍ତି ଓ ସେ ଦିଗରେ ନେତୃତ୍ୱ କରିବାର କ୍ଷମତା ଅଛି । ବହୁବର୍ଷ ଧରି ଗୁଡ଼ାଏ ବିପ୍ଳବାତ୍ମକ ଘଟଣା ଘଟି ଚାଲିଗଲା ପରେ ସମାଜବାଦୀ ମାର୍କସ୍‌ଙ୍କ ପରି କେହି ମସ୍ତିଷ୍କବାନ୍ ଲୋକ ଏ ସବୁର ବିଶ୍ଳେଷଣ କରି ଏଥିର ଦର୍ଶନ ବାହାର କରିବେ । ବର୍ତ୍ତମାନ ଅବସ୍ଥା ଦରକାର କରେନାହିଁ—ବିଶ୍ଳେଷଣ ବା ଦର୍ଶନ—ବର୍ତ୍ତମାନ ଦରକାର କରେ କେତେଗୁଡ଼ିଏ ଜରୁରୀ ମୌଳିକ କାମ ।

